# ରାମନାଥ ପଣ୍ଡାଙ୍କର
## ଅନ୍ୟାନ୍ୟ ରଚନା

ଉପନ୍ୟାସ: **ଅଦୃଶ୍ୟ ଆଶୀର୍ବାଦ**

**ଦଇବ ଦଉଡ଼ି**

(୨ୟ ସଂସ୍କରଣ)

ଗଳ୍ପ ସଂଗ୍ରହ: **ରଣଯଜ୍ଞର ନାୟକ**

ଭ୍ରମଣ: **ଘରୁ ଘରକୁ**

କବିତା: **ଦେଶୀୟା ଝୋକୀ**

**ଚଇତ ପରବ**

**ପାଣି ମାରିଗଲା ଝାଇଁ**

ପରିବେଷକ

କଲ୍ୟାଣ ପ୍ରକାଶନ

ଜୟପୁର, କୋରାପୁଟ

ମାନବିକତାର ସୁରକ୍ଷା ନିମନ୍ତେ ପୁଣ୍ୟଭୂମି ଭାରତର ପ୍ରତିରକ୍ଷା ଏକ ପବିତ୍ର କାର୍ଯ୍ୟ । ଏ ମହାନ୍ କାର୍ଯ୍ୟ ସାଧନ କରିବାକୁ ଆଜି ଜୀବନ ପଣ କରି ଯେଉଁ ବୀର ଯୱାନ ଓ ବୀରାଙ୍ଗନା-ମାନେ ଅଣ୍ଟା ଭିଡ଼ି ବାହାରିଛନ୍ତି, ସେମାନଙ୍କ ଅଟଳ ସଂକଳ୍ପ ପ୍ରତି ସମଗ୍ର ମାନବ ସମାଜର ଦୃଢ଼ ସମର୍ଥନ ଓ ଗଭୀର ଅନୁରକ୍ତିର ଅନ୍ୟ ଏକ କ୍ଷୀଣ ପ୍ରତିଧ୍ୱନି ଏହି **ପଦ୍ମବନର ପ୍ରତିରକ୍ଷା** ରଚନାଟି ଅସୀମ ଶ୍ରଦ୍ଧା ଓ ସଦିଚ୍ଛା ସହ ସେହିମାନଙ୍କ ଚିର ସ୍ମରଣୀୟ ବୀରତ୍ୱ ଉଦ୍ଦେଶ୍ୟରେ ନିବେଦନ କଲି ।

ସ୍ୱାଧୀନତା ଦିବସ
୧୯୬୩

୧୫·୮·୬୩

ପ୍ରଥମ ସଂସ୍କରଣରୁ
ଲେଖକଙ୍କର ପ୍ରାପ୍ୟ
ପାଞ୍ଚ ଶହ ଟଙ୍କା
'ଭାରତର ଜାତୀୟ
ପ୍ରତିରକ୍ଷା ପାଣ୍ଠି'କୁ
ଦାନ କରାଯିବ ।

# ପଦ୍ମବନର ପ୍ରତିରକ୍ଷା




ଲେଖକ

**ଶ୍ରୀ ରାମନାଥ ପଣ୍ଡା**





ପ୍ରଥମ ସଂସ୍କରଣ

**୧୯୭୩**





ପ୍ରକାଶକ

**ବିକାଶ ପ୍ରତିଷ୍ଠାନ**

ଜୟପୁର, କୋରାପୁଟ

ମୁଦ୍ରାକର

**ବିକାଶ ପ୍ରେସ,**

ଜୟପୁର, କୋରାପୁଟ

ମୂଲ୍ୟ

**ସାଧାରଣ ଦୁଇ ଟଙ୍କା**

**ବନ୍ଧେଇ ତିନି ଟଙ୍କା**

ପଦ୍ମଫୁଲ ପରି, କଇଁଫୁଲ ପରି ଆହ୍ଲାଦଦାୟକ ସେମାନଙ୍କର ମୁହଁ । କୋମଳତାରେ ପ୍ରଫୁଲ୍ଲତାରେ ପବିତ୍ରତାରେ ହର୍ଷ ବିଭୋର ପ୍ରତ୍ୟେକଙ୍କର ଗଢ଼ଣ, ଚାହାଣୀ ଓ ଚଳବୁଲ । ନିଷ୍କପଟ ନବୀନ ମଣିଷମାନଙ୍କର ଏହି ବିଚିତ୍ର ପଟୁଆର ଚହଲେଇ ଦେଲା ସହରବାସୀଙ୍କ ମନକୁ ।

ନାରଣ ଗୁଡ଼ିଆ ପସରା ଛାଡ଼ି ରାସ୍ତା ଉପରକୁ ଚାଲି ଆସି କହିଲା, ବାଃ ବଢ଼ିଆ ହେଇଚି । ଗୋଟିଏ ଦିନରେ, ଗୋଟିଏ ସ୍ଥାନରେ ଏକାଠି ଏତେ ଗୁଲୁଗୁଲିଆ ଛୁଆ ମୁହଁ ଏ ନେତ୍ର କେବେ ଦେଖି ନଥିଲା ।

ଜୟପୁର ସହରର ମୁଖ୍ୟ ସଡ଼କ ଉପରେ ପିମ୍ପୁଡ଼ି ଧାର ପରି ଶିଶୁ-ଶୋଭାଯାତ୍ରା ଚାଲିଛି । ପଟୁଆର ଆଗରେ ବୀର ଦର୍ପରେ ଚାଲିଛନ୍ତି, ନୂଆରେ ଭାରତୀୟ ସେନା-ବାହିନୀରେ ଯୋଗ ଦେବାକୁ ଯାଉଥିବା ବୀର ଯୱାନ୍‌ମାନେ । ସମସ୍ତଙ୍କ କପାଳରେ ବାଟ ଘାଟରେ ମାଁ ଭଉଣୀମାନେ ପିନ୍ଧାଇ ଦେଇଥିବା ବିଜୟ ଟୀକା ଚକ୍ ଚକ୍ ହୋଇ ଝଟକୁଛି । ପଛରେ, ଦୁଇ କରେ ଗ୍ରେଠ ଗ୍ରେଠ ପୁଅ ଝିଅ ବିଭିନ୍ନ ରଙ୍ଗର, ବିଭିନ୍ନ ଗଢ଼ଣର ଭିନ୍ନ ଭିନ୍ନ ପୋଷାକ ପିନ୍ଧି

ଗୁଳିଛନ୍ତି । ଏ ଖାଲ ଉପର ମନକୁ ଦେଶଭକ୍ତ ଦେଖାଇ, ଭୁଞ୍ଚାକୁ ଖଦଡ଼ ପିନ୍ଧି ଫାନ୍ଦ ଫାନ୍ଦିଲା ପରି ନୁହେଁ କମ୍ପା ଉପରକୁ ଉଠି ନ ପାରିବାରୁ, ଉଚ୍ଚ ଆସନ ପାଖକୁ ହାତ ନ ପାଇବାରୁ ଗୋରୁ ଗୋଠ ଗ୍ରୁଡ଼, ଖଦଡ଼ ଫିଙ୍ଗି ସେ ପାଖ ମଇଁଷି ଅଡ଼ାର ଭିତରେ ପଶି ଶିଙ୍ଗ ହଲେଇ "କୁଳ ମୂଳଆର ଜୟ !" ଚିତ୍କାରରେ ତାଙ୍କୁ ଫଟେଇ ମଇଁଆର ଦଳାଦଳି ନୁହେଁ, ଏ ଶୋଭାଯାତ୍ରାରେ ପ୍ରକୃତରେ ପ୍ରାଣମୟୁ ଜାତୀୟ ଉନ୍ମାଦନା କ୍ଷିପ୍ର ଗତିରେ ପହଁରୁ ଥିଲା । ସତେ ଯେମିତି ମଙ୍ଗଳମୟ ଅଖଣ୍ଡ ମାନବିକତାର ଅବିଚ୍ଛିନ୍ନ ଆବେଦନ ମୁହଁେ ମୁହଁେ ଉଚ୍ଛୁଳି ପଡ଼ୁଥିଲା ।

ଶହ ଶହ କୁନି କୁନି ପୁଅ ଝିଅ ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ, ଶନିବାରିଆ ଛୁଟିବେଳ ଦେଖି ଜୟଯାତ୍ରୀ ଯଉଆନମାନଙ୍କୁ ବିଦାୟ ଦେବାକୁ ବ୍ୟାଣ୍ଡ୍ ବଜେଇ, ଏ ସଡ଼କରୁ ସେ ସଡ଼କ, ଏ ସାହିରୁ ସେ ସାହି ପାଦରେ ଗୁଳି ଗୁଳି ବାହାରି ପଡ଼ିଛନ୍ତି । ଗାର୍ଲସ୍କୁଲ ହେଡ୍‌ମିଷ୍ଟ୍ରେସ୍‌ଙ୍କ ଭାଷାରେ, ଫୁଲ ଫୁଟିଲି ପରିକା, ଫୁଲ ଫୁଟିଲି ପରିକା, ମୋ ଝିଅମାନଙ୍କ ମନ ଚହଲି ଯା ଆସରେ ଦାଣ୍ଡବାଟ ଉଚ୍ଛୁଳି ପଡ଼ୁଛି । କେଡ଼େ ଶୋଭିବନ ଦିଶୁଛି । ସତେ ଦେଖ, କି ମାଦକତା ଭରି ରହିଛି ତାଙ୍କର କଅଁଳିଆ କଣ୍ଠରେ—

| | |
|---|---|
| ଭାରତ ଭୂମି | ବୀର ଭୂମି ! |
| ଆମର ଦେଶ | ବୀର ଦେଶ ! |
| ଦୁଷ୍ଟ ଚୀନ୍ | ନଷ୍ଟ ହେଉ ! |
| ଆମର ଯଉଆନ୍ | ଜୟୀ ହେଉ ! |
| ଆମେ ସମସ୍ତେ | ଯଉଆନ ହେବୁ |
| ଜନ୍ମ ମାଟିର | ମାନ ରଖିବୁ । |
| ଭାରତ ରାଷ୍ଟ୍ର | ଜିନ୍ଦାବାଦ୍ |
| କମ୍ୟୁନିଷ୍ଟ ଚୀନ୍ | ମୁର୍ଦାବାଦ୍ |
| ଭାରତ ମାତା କି | ଜୟ ! |
| ପଣ୍ଡିତ ନେହରୁ କି | ଜୟ ! |

ଟିପୁ ରୁ ଟାପୁ ରୁ ଏଡ଼ିକରୁ ଏଡ଼ିକ ପୁଅ ଝିଅମାନଙ୍କ ବୀଣା ପରି, ବଇଁଶୀ ପରି, ହାରମୋନିୟମ ପରି, ମାଇକ୍‌ର ସ୍ୱର ପରି ଠାଇଁ ଠାଇଁ ଗୁଇଁ ଗୁଇଁ, ଇଁ ଇଁ ଆଉରି କେତେ ରକମର ମିଶାମିଶି କଣ୍ଠର ଏ ଜୟ ଡାକ, ଏ ବୀର ହୁଙ୍କାରରେ ଦାଣ୍ଡବାଟ ଫାଟି ପଡ଼ିଲା । ସଡ଼କ କଡ଼ରେ ଭିଡ଼ ହୋଇ ଠିଆ ହୋଇଥିବା ଦୁଇଶ କି

ତିନିଶ ବର୍ଷର ପୁରୁଣା ଦେଉଳ ବେଢ଼ାର ଭଙ୍ଗା ପାଚେରି ମଧ୍ୟ ଦହଲି ଗଲାପରି ଲାଗିଲା । ରଘୁନାଥ ମନ୍ଦିର ପାଚେରି ଫାଟରୁ ବାହାରି ବୁଢ଼ା ଏଣ୍ଡୁଅ ତା ଅଳିଁସ ବଉଁଶ ପିଲା ପିଚିକା ସାଙ୍ଗରେ ମୁଣ୍ଡ ଟେଙ୍କାରିଲା, ନାଲିଭୁଣ୍ଡା ଚମ୍କେଇନଲା, ତା ମାଁ ବାପା ଆଉ ଅଧାକାଲିଆ ଝିଟିପିଟି ତା ଭାଇ ଭଉଣୀ ସାଙ୍ଗରେ ରାସ୍ତା ଉପରକୁ ଅନଶା କଲେ । ସାହି ମୁଣ୍ଡକୁ ପଟୁଆର ଆସିଲା ବେଳକୁ ଘରର ବୋହୂ ଭୁଆସୁଣୀ ଶୋଇଲା ଛୁଆଙ୍କୁ କାନ୍ଧରେ ପକେଇ, ହଳଦି ଗରଗର, ପାଉଡ଼ରର ସରସର ବୁକରେ ଜାକିଧରି ଦାଣ୍ଡ କବାଟ ମେଲା କୋଣେଇ ଅନେଇଲେ, ଆଉ କେତେ କୋଠାର ଛାତ ଉପରକୁ ଉଠି ବେକ ଅଣେଇ ନାକେଇ ରହିଲେ ।

ଜରରେ, ରୋଗରେ ଝଡ଼ି ପଡୁଥିବା ଅଶୀଏ କି ନବେ ବର୍ଷର ବୁଢ଼ୀମାନେ ବି ଭଲ କରି ପାଖେଇ କାନେଇ ଶୁଣିବା ପାଇଁ ଧାଇଁ ଆସିଲେ । ପାଟସାହି ମଝିରେ ଜୟପୁର କଲେଜର ଟୋକା, ଶ୍ରେଷ୍ଠ ଅଧ୍ୟାପକ ଗଡ଼ନାୟକ ଗୋଟିଏ ମନ ଓଟରା ବଡ଼ିଆ ଆୟୋଜନ କରିଥିଲେ । ସେ କାଲି ସଞ୍ଜରୁ ଲଟିପଡ଼ ଦି ହାଣ୍ଡି ମିଠେଇ, ତିନି ଚଡ଼ୁଆ ମହଣ ଚୂରପାକ କରେଇ ଥିଲେ । ପଟୁଆରରେ ଯେତେ ପିଲା ଆସିବେ ସମସ୍ତଙ୍କୁ ସେ ମିଠେଇ ଦେବେ, ସଭା କରିବେ, ଯବାନମାନଙ୍କୁ ସମ୍ବର୍ଦ୍ଧନା ଜଣାଇବେ । ଏ କଥା କାଲି ସେ କଲେଜରୁ ଫେରିବା ବେଳେ ବାଟରେ କହିଦେଇ ଆସିଥିଲେ । ସେ ପାଖରେ ଠିଆ ହୋଇଥିଲେ ସ୍ଥାନୀୟ ଏମ୍. ଏଲ୍. ଏ., ଜିଲ୍ଲା ପରିଷଦ ଚେୟାରମେନ୍, ତହସିଲଦାର ଓ ଆଉ କେତେ ଜଣ, ସେ ସମସ୍ତଙ୍କୁ ବି ଗଡ଼ନାୟକେ ସାଦର ନିମନ୍ତ୍ରଣ ଜଣାଇ ଥିଲେ ।

ଅଧ୍ୟାପକ ଗଡ଼ନାୟକଙ୍କ ପତ୍ନୀ କବିତା ଓ ତାର ସାଙ୍ଗ ମଡ଼ଗା ଘର ଝିଅ ଉମା ଲଟିପଡ଼ ଫୁଲମାଳ ଗୁନ୍ଥିଥିଲେ । ଦୂରରୁ ପଟୁଆର ଆସୁଥିବା ଦେଖି, ଆନନ୍ଦରେ ସେ ଦିହେଁ କୋଠା ଉପରେ ଧରାଧରି ହୋଇ ବୁଢ଼େଇ ନାଚ ପକେଇଲେ । କବିତା କାନରେ ବାନ୍ଧିଥିବା ଗୁଚ୍ଛ ଝୁମ୍କା ଲାଗିଯାଇ ଉମାର ପତଳା ବ୍ଲାଉଜ୍‌ଟା ବେକ ତଳକୁ, କାଖ ପାଖକୁ କରି ଫର୍ କିନା ଚିରିଗଲା ଯେ, ଲାଜରେ ସେ ମୁହଁ ଘୋଡ଼େଇ ପକେଇଲା । ଆଉ ଗୋଟାଏ ବଦଳାଇବା ଯାଏ କଥାଗଲା ।

ପଟୁଆର ପାଖେଇ ଆସିଲା । ପାହାନ୍ତିଆର ମନ୍ଦ ମନ୍ଦ ଶୀତଳ ବାଆର ଅମାନିଆ ଲହରରେ, ଗୀତ ଗାଇଲା ଝିଅପରି ମଥା ହଲାଉଥିବା ଏକ ମୂର୍ତ୍ତିମନ୍ତ ପଦ୍ମବନ ଭଳି ଏ ଶିଶୁ ଶୋଭାଯାତ୍ରା ଦହଲି ଦହଲି ଆଗେଇ ଆସିଲା ।

କି ସୁନ୍ଦର ! କବିତା କହିଲା ।

ହେଲେ··· ଉମା ଦୀର୍ଘଶ୍ୱାସ ପକାଇ କହିଲା, ଏହି ମଧୁରତା ଜାଗାଏ ଶକ୍ତି ଓ ସମ୍ପଦ, ଏ ଦେଶର ସୌଭାଗ୍ୟମୟ ଭବିଷ୍ୟତର ପ୍ରତୀକ ଏ ନିଶାନ, ଏ ଅକ୍ଷତ ଶିଶୁ ସମାଜର ପ୍ରତିରକ୍ଷା ହୋଇ ପାରିବତ ? କାଲି ସକାଳେ ଯଦି ରାକ୍ଷସ ପ୍ରକୃତିର ଦୁଷ୍ଟ ଚୀନ୍ ଆକ୍ରମଣକାରୀମାନେ ରାତି ଅଧରେ ବୋମା ପକେଇ ଦେବେ, କିଏ ରକ୍ଷା କରିବ ଏ ଦେଶର ଏହି ପ୍ରିୟ ଦେହଗୁଡ଼ିକୁ ?

କବିତା କିଛି କହିବ ନାହିଁ, କହିବ ନାହିଁ ହୋଇ ତଳକୁ ଚାହିଁ ଚାହିଁ କହିଲା, ଚେଷ୍ଟା କରିବାକୁ ହେବ ।

'କିଏ କରିବ ?'

'ଆମେ କରିବା । ସମସ୍ତେ କରିବେ ।'

ଉମାର ଦେହ ଶିହରି ଉଠିଲା । ଉତ୍ତେଜନାରେ ସେ କବିତାର ଦେହରେ ଗୁଡ଼େଇ ତୁଡ଼େଇ ହୋଇ ତାର ନାହିଁ ନାହିଁ କଲା ମୁହଁରେ ଚୁମ୍ବନ ଦେବାକୁ ଲାଗିଲା ।

'ଛି···ଲୋକ ଦେଖୁଛନ୍ତି ।'

'ଦେଖନ୍ତୁ, ମୁଁ ତ ଲୁଚେଇ ଛପେଇ କାହାର ଧନ ଯୌବନ ଲୁଟୁ ନାହିଁ ।'

ପୁଣି ଉଭୟେ ଶୋଭାଯାତ୍ରାର ଉନ୍ମାଦନା ଅନୁଭବ କରିବାକୁ ଲାଗିଲେ ।

ଅଧ୍ୟାପକ ଗଡ଼ନାୟକ ଦଉଡ଼ି ଆସି କହିଲେ, ଉମା ତୁମେ ସର୍ଦ୍ଦାରମାନଙ୍କୁ, ଏ ପିଲାଙ୍କୁ ସମ୍ବର୍ଦ୍ଧନା ଜଣାଇ ଦି ପଦ କହିବ । କବିତା, ତମେ ସର୍ଦ୍ଦାରମାନଙ୍କ କପାଳରେ ବିଜୟ ଟୀକା ଦେବ !

'ମା ଲୋ, ମୁଁ କହିବ ? ନା ନା ମୁଁ କହି ପାରିବ ନାହିଁ ।' ଉମା କହିଲା ।

'ଏମିତ ହୁଅନ୍ତୁ ? ତୁମେ ପ୍ରସ୍ତୁତ ହୋଇଯାଅ ଉମା ! ସେମାନେ ଚାଲି ଆସିଲେଣି । ତୁମେ କୁହ । ମୋର ମାନ ରଖ । କବିତା, ବାହାର ଶୀଘ୍ର !'

'ଆପଣ କହୁ ନାହାନ୍ତି ?' ଉମା ପ୍ରଶ୍ନ କଲା ।

'ତମେ ବୁଝି ପାରିବ ନାହିଁ ଉମା । ମୁଁ ଚାକିରି କରୁଛି । ଚାକିରି କରୁଛି କେତେ ଜଣ ହୃଦୟହୀନ ଉଚ୍ଚ ଶିକ୍ଷିତମାନଙ୍କ ଅହଂକାରର ଘେର ଭିତରେ । ଲୋକ ମୁଖରେ ମୋ କାର୍ଯ୍ୟର ପ୍ରଶଂସା ତାଙ୍କ ମନରେ ଆଘାତ ଦେବ । ପ୍ରତିକ୍ରିୟା ବିଷମ ହେବ । ତୁମେ ମୋତେ ସାହାଯ୍ୟ କର ।'

ଗଡ଼ନାୟକ ଦାଣ୍ଡକୁ ଚାଲିଗଲେ ।

ଶୋଭାଯାତ୍ରା ନିକଟରେ ଆସିଲା । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ରାସ୍ତାକୁ ଗୁଡ଼ ଠିଆହେଲେ । କଂଗ୍ରେସ ସଭାପତି, ଜିଲ୍ଲା ପରିଷଦ ଚେୟାରମେନ, ଏମ୍. ଏଲ୍. ଏ., ତହସିଲଦାର, ମୁନିସିପାଲିଟି ଚେୟାରମେନ୍ ଆଦିରୁ ଫୁଲ ମାଳମାନ ହାତରେ ଧରି ଆଗ ଧାଡ଼ିରେ ଠିଆହେଲେ ।

ପଞ୍ଚୁଆର ସ୍ଥିର ସମୁଦ୍ର ପରି ବିନମ୍ର ନୀରବ ହୋଇ ଠିଆହେଲା । ଏମାନେ ଅପୂର୍ବ ଉତ୍ସାହରେ, ଶ୍ରଦ୍ଧାରେ ଯବାନମାନଙ୍କ ବେକରେ ଫୁଲ ମାଳ ଲମ୍ବାଇ ଦେଉ ଦେଉ 'ଭାରତ ମାତା କି ଜୟ' ନାଦରେ ଆକାଶ ପବନ ଥରି ଉଠିଲା ।

କବରୀ ବକୁଳ ପରି ଧାଇଁ ଆସି ଯବାନମାନଙ୍କ କପାଳରେ ବିଜୟ ଟୀକା ଲଗାଇ ଦେଉ ଦେଉ ସାଇ ପଡ଼ିଶା ଝିଅ ବୋହୂଙ୍କ ହୁଳହୁଳି ଧ୍ୱନିରେ ଉଚ୍ଛୁଳି ପଡ଼ିଲା ଆକାଶ । ଫୁଲ, ଦୁବ, ବରକୋଳି ପତ୍ର ଓ ହଳଦିଆ ଗୁଣ୍ଡଳ ବୃଷ୍ଟି ହେଲା ।

ନୂତନ ପ୍ରେରଣା, ନୂତନ ଉତ୍ସାହ, ନୂଆ ଉନ୍ମାଦନାରେ ପିଲାମାନଙ୍କ ଟିକି ଟିକି ମୁହଁ, ଗାଲ, କପାଳ, ନାକଟିମାନ ଫଗୁ ବାଜିଦେଲା ପରି ନାଲି ଟହ ଟହ ଦେଖାଗଲା । ସେମାନେ ତନ୍ମୟ ହୋଇ ପଡ଼ିଲେ । ସତେ ଯେମିତି ପ୍ରତ୍ୟେକଙ୍କ ବ୍ୟକ୍ତିତ୍ୱ ମନ ପ୍ରାଣ ପରସ୍ପର ମଧ୍ୟରେ ସକଳ ପାର୍ଥକ୍ୟକୁ ଏକାକାର କରି ହଜିଗଲା ଜାତୀୟ ଐକ୍ୟର ମହା ସ୍ରୋତରେ ।

'ଆପଣମାନେ ଆମର ବୀର ଯବାନମାନଙ୍କ ଜୟଯାତ୍ରାର ଶୁଭ ମନାସନ୍ତୁ । ଏ ଛୁଆଙ୍କୁ ଉତ୍ସାହିତ କରିବା ପାଇଁ ଯବାନମାନଙ୍କୁ ସମ୍ବର୍ଦ୍ଧନା ଜଣାଇ କିଛି କିଛି କହନ୍ତୁ ! ଆଶୀର୍ବାଦ କରନ୍ତୁ । ଭରସା ଦିଅନ୍ତୁ !'

ଭଦ୍ରବ୍ୟକ୍ତିମାନଙ୍କୁ ଗୁହାଁରି ଗଡ଼ନାୟକ କହିଲେ ।

ସାଙ୍ଗେ ସାଙ୍ଗେ ଆଗକୁହା ଏମ୍. ଏଲ୍. ଏ. ବିଭୁ ବାବୁ ପ୍ରତିବାଦ କଲେ, ଏ କି କଥା ! ସମସ୍ତ ଆୟୋଜନର ମୂଳ ଆପଣ, ଆପଣ କୁହନ୍ତୁ ।

'ହଁ ହଁ ଆପଣ କୁହନ୍ତୁ ।'

ଅନ୍ୟମାନେ ପାଳି ଧରିଲେ ।

ହସ ହସ ମୁହଁରେ ଗଡ଼ନାୟକ ଟେବୁଲ ପାଖରେ ଠିଆ ହୋଇପଡ଼ି ବିନୀତ ଗଳାରେ ଆରମ୍ଭ କଲେ, ପିଲାମାନଙ୍କର ଏହି ଉନ୍ମାଦନାଭରା ଆୟୋଜନ ଦେଖି ମୁଁ ସ୍ତମ୍ଭିଭୂତ ହୋଇ ଯାଇଛି । ଆଜି ଏ ପିଲାମାନେ ସହରର ଗଳି କନ୍ଦିରେ ଯେଉଁ ଜାତୀୟ ଅନୁପ୍ରେରଣାର ଅଗ୍ନିକଣା ବୁଣି ଦେଇଛନ୍ତି, ତାର

ତୁଳନା ନାହିଁ । ମୁଁ ଏମାନଙ୍କର ଭବିଷ୍ୟତର ଶିକ୍ଷକ, ଗୁରୁ । ଶିଷ୍ୟମାନଙ୍କ ପ୍ରଶଂସା ଗୁରୁର ମୁହଁରେ ଶୋଭାପାଏ ନାହିଁ । ତେଣୁ ମୁଁ ଅନ୍ୟ ବନ୍ଧୁମାନଙ୍କୁ ଅନୁରୋଧ କରୁଛି, ସେମାନେ କିଛି କିଛି କହନ୍ତୁ ।

ଭାରତ ମାତାର ରଜତ ମୁକୁଟ, ଭାରତ ସୀମାନ୍ତର ଚିର ଜାଗ୍ରତ ଅଟଳ ଅଚଳ ପ୍ରହରୀ ହିମାଳୟର ବକ୍ଷଦେଶ ଆଜି ବିପନ୍ନ, ରକ୍ତାକ୍ତ ହୋଇଛି । ଏହି ଦାରୁଣ ବାର୍ତ୍ତାକୁ ଠିକଣା ଭାବରେ ଘରେ ଘରେ ପ୍ରତ୍ୟେକ ନର ନାରୀଙ୍କ ହୃଦୟ କନ୍ଦରରେ ପ୍ରତିଧ୍ୱନିତ କରାଇବା ପାଇଁ, ଶିଶୁମାନଙ୍କର ଏଇ ବିପୁଳ ଆୟୋଜନ ସମସ୍ତଙ୍କୁ ମୁଗ୍ଧ କରିଛି । ସହରର ବହୁ ବିଶିଷ୍ଟ ବ୍ୟକ୍ତି ଏହି ଆୟୋଜନକୁ ସମର୍ଥନ ଜଣାଇ ଏଠି ଉପସ୍ଥିତ ରହିଛନ୍ତି । ଯୁଦ୍ଧଯାତ୍ରୀ ବୀର ଯବାନମାନଙ୍କ ସହି ନିଷ୍କଳଙ୍କ ଅସଂଖ୍ୟ ଭାରତୀୟ ଆତ୍ମାର ଏ ଯେଉଁ ଅବିଚ୍ଛିନ୍ନ ଶୋଭାଯାତ୍ରା ଆଜି ଆମ୍ଭମାନଙ୍କ ପ୍ରାଣରେ ଦେଶପ୍ରତି କଠୋର କର୍ତ୍ତବ୍ୟ ବୋଧର ଗଭୀର ସ୍ୱୀକୃତି ଆଣି ଦେଇଛି, ସେଥିପାଇଁ ପ୍ରତ୍ୟେକ ପୁଅ ଝିଅଙ୍କୁ, ଯବାନମାନଙ୍କୁ ସହରବାସୀ ମାଁ ଭଉଣୀ, ବାପ ଭାଇଙ୍କ ତରଫରୁ ଶ୍ରଦ୍ଧା ଅଭିନନ୍ଦନ ଜଣାଇବା ଲାଗି ମୁଁ ସର୍ବ ପ୍ରଥମେ ଏ ସାହିର ବିଶିଷ୍ଟ ସମାଜ ସେବିକା ଉମା ଦେବୀଙ୍କୁ ଅନୁରୋଧ କରୁଛି ।

କରତାଳି ଶବ୍ଦରେ ଗଡ଼ନାୟକ ଘରର ତଳ ଉପର ଦୁଲ୍‌ଦୁଲ୍ ହେଲା ।

ଉମା ଲାଜରେ ମୁଣ୍ଡପୋତି ଦେଲା । ସେ କବିତାକୁ ଜାବୁଡ଼ି ଧରି ପଟକେଇ କହିଲା, ନାଇଁ ନାଇଁ ମୁଁ ପାରିବି ନାହିଁ । ମୁଁ କିଛି କହିପାରିବି ନାହିଁ ।

ଗଡ଼ନାୟକ ଆଉ ବିଳମ୍ବ ସହି ପାରିଲେ ନାହିଁ । ସେ ଝପଟି ଯାଇ ଏକ ପ୍ରକାର ଟାଣି ଟାଣି ନେଇ ଆସିଲେ ଉମାକୁ, ଟେବୁଲ ପାଖକୁ ।

ପୁଣି ଘନ ଘନ ତାଳି ପଡ଼ିଲା ।

ଉମାର ଶରୀର ରୋମାଞ୍ଚିତ ହୋଇ ଉଠିଲା । ଦେହ, ହାତ ଥରିଗଲା, ଏକ ଅଦ୍‌ଭୁତ ଶିହରଣ ଖେଳିଗଲା ତାହାର ଦେହରେ ମୁହଁରେ, ରକ୍ତର ଧାରେ ଧାରେ ।

"ଏ ସହର ଠାରୁ କାହିଁ କେତେ ଦୂରରେ, ହଜାର ହଜାର ମାଇଲ ସେ ପାଖରେ ଭାରତ ସୀମାନ୍ତରେ ଲଢ଼େଇ ଚାଲିଛି । ଚୀନ୍ ଦେଶର ପାପାତ୍ମା କମ୍ୟୁନିଷ୍ଟ ଶାସକମାନେ ପବିତ୍ର ନିର୍ଦ୍ଦୋଷ ଭାରତ ଭୂମି ଉପରେ ଆକ୍ରମଣ ଆରମ୍ଭ କରି ଦେଇଛନ୍ତି; ଯାହାକି ଏ ଦେଶର ଏହି ଶିଶୁମାନେ, ଯୁବକମାନେ ନିଜ ଆଖିରେ ଦେଖି ନାହାନ୍ତି, ନିଜ ଅନୁଭୂତିରେ ଜାଣି ନାହାନ୍ତି, ସେହି ବିପତ୍ତିରେ

ପଡ଼ ନାହାନ୍ତି; ତଥାପି ସେମାନେ ଏଠି ଏବେ ଦେଶପ୍ରୀତିର ଯେଉଁ ଉଦ୍ଦାମ ବନ୍ୟା ଛୁଟାଇ ଦେଇଛନ୍ତି, ତାହା ଅତ୍ୟନ୍ତ ମର୍ମବେଦକ, ପ୍ରାଣ ଉନ୍ମାଦକ ହୋଇଛି। ହଜାର ହଜାର ସହରବାସୀଙ୍କୁ ଅନୁପ୍ରାଣିତ କରିଛି। ମୁଁ ସହରବାସୀଙ୍କ ତରଫରୁ ବୀର ଯୁବକମାନଙ୍କୁ, ଏହି ଶିଶୁମାନଙ୍କୁ ଗଭୀର ସ୍ନେହ, ଶ୍ରଦ୍ଧା ସଦିଚ୍ଛା ଓ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ସହରର ପ୍ରତ୍ୟେକ ସକ୍ଷମ ନର ନାରୀଙ୍କ ଠାରେ ଦୃଢ଼ ଦାବୀ କରୁଛି ଯେ, ସରଳ ନିରୀହ ଶିଶୁମାନଙ୍କର ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଜାତୀୟ ଆବେଦନର ଚୂଡ଼ାନ୍ତ ପ୍ରତ୍ୟୁତ୍ତର ଆମ୍ଭମାନଙ୍କୁ ଦେବାକୁ ପଡ଼ିବ। ଦେଶପ୍ରତି ନିଷ୍ଠାର ସହିତ ନିଷ୍ଠୁର କର୍ତ୍ତବ୍ୟ କରିବାକୁ ହେବ। ଜୟହିନ୍ଦ୍ !"

ଏକା ନିଶ୍ୱାସରେ ଏତକ କହିଦେଇ ମୁହଁ ଉପରକୁ ପଣତ ଟାଣିଆଣି ଉମା ଧାଇଁ ପଳାଇଲା। ସମବେତ ଜନତା ଚିତ୍କାର କଲା, ଜୟହିନ୍ଦ୍ ! ଜୟହିନ୍ଦ୍ !

ଦମ୍ଭିଲା ଏହି ମୁଗ୍ଧ ମଧୁର ଧ୍ୱନିରେ ଦୂର ଦୂରାନ୍ତର ନୀଳମେଘ ଶ୍ରେଣୀ ଦହଲି ଉଠିଲା ପରି ଲାଗିଲା।

ବଡ ସାନ ସ୍ତ୍ରୀ ପୁରୁଷ ସମସ୍ତେ ଉତ୍ସୁକତା ପଡ଼ି ଗଡ଼ନାୟକ ହାତରୁ, କବିତା ହାତରୁ, ଉମା ହାତରୁ ମିଠେଇ ଚଢ଼ୁଆ ଛଡ଼େଇ ନେଇ ମନଇଚ୍ଛା ବାଣ୍ଟିଲେ ମନ ଆନନ୍ଦରେ।

କେତେଟା ମିନିଟ୍ ପରେ ଶୋଭାଯାତ୍ରା ପୁଣି ଅଗ୍ରସର ହେଲା, କେଉଁଠି ସାହି ଆଡ଼କୁ। ଯେଉଁଠି କି ଏବେ କେତେ ବର୍ଷ ହେଲା ବଡ଼ ବଡ଼ ନୂଆ କୋଠା ତୋଳା ହୋଇଛି, ଦେଶଦ୍ରୋହୀମାନେ, 'ହାମ୍ ସବ୍ ଜାନ୍‌ତା, ମଗର କୁଛ୍ ନେହି କର୍‌ତା' ଆଦ୍‌ମୀମାନେ, ଭଙ୍ଗା ଦଦରା ଅଲ୍ଲାୟୁଷ କରସିନ ଡ୍ରାମ୍ ପରି ଅକର୍ମା ଲୋକମାନେ ବାସ କରନ୍ତି— ସେହି ସାହି ଆଡ଼େ ବୀର ଦର୍ପରେ ଆଗେଇ ଗଲା ଏ ପଦ୍ମବନ, ଏ ଶିଶୁ-ପଟୁଆର।

କବିତା କହିଲା, ଧନ୍ୟ।

ଉମା ଆଖିରୁ ଲୁହ ପୋଛି ପୋଛି ଭିତରକୁ ପଳେଇଲା। ତାର ଅନ୍ତରରେ ସୀମାନ୍ତ ପାଇଁ ଉଚ୍ଛ୍ୱସିତ ଆକୁଳତା ତାଣ୍ଡବ ନୃତ୍ୟ ଆରମ୍ଭ କରି ଦେଇଥିଲା।

ଜିଲ୍ଲା ପରିଷଦ ଚେୟାରମେନ୍ ତାଙ୍କର ଏମ୍. ଏଲ୍. ଏ. ବନ୍ଧୁ ବନ୍ଧୁ ବାବୁଙ୍କୁ ହଲାଇ ଦେଇ ତନ୍ମୟ ହୋଇ କହିଲେ, ଏ ଝିଅଟି କିଏ କି? ସେଇ ତ··· ବାସ୍ତବିକ୍ ଭାଇ, ତାର ଭାଷଣ ଶୁଣିବା ପରେ ମୋ ଦେହର ପ୍ରତି ରକ୍ତକଣା ଆଉଟି ପଡ଼ୁଛି।

ତୁମକୁ କଥା ଦେଉଛି, ତୁମେ ଯେଉଁ ଦିନ କହିବ, ସେଇ ଦିନ ମୁଁ ବନ୍ଧୁକ କାନ୍ଧେଇ ଯୁଦ୍ଧ ଭୂଇଁକୁ ଚାଲିଯିବି । ବାଃ ବାଃ କି ପ୍ରଜ୍ୱଳିତ ଭାଷା ବିନ୍ୟାସ, କି ମର୍ମସ୍ପର୍ଶୀ କଣ୍ଠ ସ୍ୱର !

'ରହ ନା, ତାକୁ ଠିକଣା କାମରେ ଲଗାଇ ଦେବା ଯେ !'

'ଆଚ୍ଛା, ଆମେ ଯାଉଛୁ । ବହୁତ ଧନ୍ୟବାଦ ।'

ଜଣେ ଜଣେ ହୋଇ ଗଡ଼ନାୟକଙ୍କଠୁଁ ବିଦାୟ ନେଇଁ ସମସ୍ତେ ଚାଲିଗଲେ ।

ପାନ ସାହିର ଲୋକାରଣ୍ୟ ସଡ଼କଟି ଅଳ୍ପ ସମୟ ଭିତରେ ଜନଶୂନ୍ୟ ହୋଇ ପଡ଼ିଲା । ଗଡ଼ନାୟକଙ୍କ ଦୁଇ ଆଖି ଭିତରେ ପଶିଗଲା ଏକ ପ୍ରଶାନ୍ତ ନୀରବତା ।

ନେଫା, ଲଦାଖ୍‌ର ଛୁଣ୍ଟି ପଡ଼ିଲା ପରି ଗଗନଚୁମ୍ବି ପଥର କାନ୍ଥ ସଦୃଶ୍ୟ ବଡ଼ ବଡ଼ ପାହାଡ଼, ଆଖି ପାଉ ନଥିବା ଗଭୀର ନଦୀ ନାଳର ଚିତ୍ର ତାଙ୍କ ମନରେ ଆଙ୍କି ହୋଇଗଲା । ଭାବନା ଭିତରେ ସର୍ବନାଶି ମେସିନଗନ୍‌ର ଧ୍ୱଂସମୁଖୀ ବିକଟାଳ ଶବ୍ଦ ତାଙ୍କର କାନକୁ ବଧିର କରି ପକେଇଲା ।

'କଲେଜ ବେଳ ପରା ହେଲାଣି ।' କବିତା ତାଙ୍କୁ ଚେତାଇ ଦେଲା ।

ତରୁଣ ଅଧ୍ୟାପକ ଗଡ଼ନାୟକଙ୍କ ଘର କଟକରେ । ହେଲେ ସେ ଜୟପୁରକୁ ଆସିବା ଦିନୁ ଏମିତି କେତେଟା ନାଁ ପଡ଼ା କାମ କରି, ମାଦଳା ସାହିଠୁଁ ଆରମ୍ଭ କରି ଖ୍ରୀଷ୍ଟାନ ପଡ଼ା, ବଙ୍ଗଳା ବାଡ଼, ପାୱାରବଡ଼ା ପର୍ଯ୍ୟନ୍ତ ଆବାଳ ବୃଦ୍ଧ ବନିତା ସମସ୍ତଙ୍କର ଅତି ପରିଚିତ ହୋଇ ଗଲେଣି ।

ସହରରେ କାଲି ସେନା-ବାହିନୀରେ ଯୋଗ ଦେଉଥିବା ଯୁବକମାନଙ୍କ ସମ୍ବର୍ଦ୍ଧନା ପାଇଁ ଯେଉଁ ଶିଶୁ ଶୋଭାଯାତ୍ରା ହୋଇଥିଲା, ତାର ଅନାକାଂକ୍ଷିତ ସଫଳତା ଉପରେ ଆଜି ଗଳି କନ୍ଦିରେ ଗରମା ଗରମି ଆଲୋଚନା ବେଶ୍ ଜମି ଯାଇଛି । କିଏ କହୁଛି, ଏ ସବୁ ଅଧ୍ୟାପକ ଗଡ଼ନାୟକର କାମ । ସେ ଚହଲା ନ ପଡ଼ିଥିଲେ କିଛି ହୁଅନ୍ତା ନାହିଁ । ଗାର୍ଲ୍ସ ସ୍କୁଲର ଅଙ୍କ ଶିକ୍ଷୟିତ୍ରୀ ଧୂଳିଅପା କହିଲା, ଝିଅ ଖଣ୍ଡେ ହେଲେ କି ହେଲା ଉତ୍ସାହ । ବେଶ୍ ଚିତ୍ରପଦ କହିଲା ଯେ କହିଲା ଭଳି । ରକତ ଯା ଦେହରେ ବହୁଛି, ସେ ଚେଇଁ ଉଠିଛି ।

ଖିଆ ବେଳ । ଯିଏ ଯା କାମରେ ଏ ପାଖ ସେ ପାଖ ହେଉ ହେଉ ସିଗ୍ରେଟ୍, ବିଡ଼ି କି ପାନ କିଣିବାକୁ ଯାଇ କେତେ ଜଣ ଏକାଠି ବସି ଗପ ଜମେଇ ଦେଲେ । ମହଲା ଡାକ୍ତରଖାନାର ଶିମୂଳ ଗଛ ତଳର ପାନ ଦୋକାନ ସାମନା ପଥର ଉପରେ ଫଟା ତଳପାଟାକୁ ରଗଡ଼ୁ ରଗଡ଼ୁ ମୁନସିପାଲିଟି ମିସ୍ତ୍ରୀ ଅଗାଧୁ ସଉରା କହିଲା, ତମେ ଯାହା କହ ତାର କି ଗରଜ ଥିଲା କି ଯେ, ଶହେ କି ଦେଢ଼ ଶହ, ହାତରୁ ଖରଚ କରି ମିଠେଇ ବାଣ୍ଟିଲା ? ଏହାକୁ କହନ୍ତି ଦେଶ ପ୍ରୀତି ! ନା ଆଉ କଣ ?

ଡେଙ୍ଗା ହୋଇ ଯେଉଁ ଲୋକଟା ରହମତ୍ କଣ୍ଟ୍ରାକ୍ଟରର ପାଖରେ ଗୁମାସ୍ତା କାମ କରେ, ସେଇ ଗୋବିନ୍ଦ ରଥ ଉପର ପାଟିର ବଡ଼ ବଡ଼ ଦାନ୍ତଗୁଡ଼ାକୁ ଲୁଚେଇବାକୁ ଚେଷ୍ଟା କରି କହିଲା, ନାଇ ହେ, ସରକାରୀ କର୍ମଚାରୀ କେତେ ନାହାନ୍ତି । ହେଲେ ମନରୁ କାଢ଼ି ଦେଶପାଇଁ ଉପରେ ପଡ଼ି ଏତେ କଥା କିଏ କରୁଛି ?

ଲକ୍ଷ୍ମଣ ନାୟକ ବାଳିକା ବିଦ୍ୟାଳୟର ଓଡ଼ିଆ ପଣ୍ଡିତ ଶିବ ମାଷ୍ଟ୍ରେ ପାନ କିଣୁଥିଲେ । ଏମାନଙ୍କ କଥା ଶୁଣି ପାଖକୁ ଆସି କହିଲେ, କାହିଁକି କରୁନାହାନ୍ତି ? ତମେ କେବେ ଦେଖିନ କି, ମନ୍ତ୍ରୀମାନେ ଯେତେବେଳେ ଗସ୍ତରେ ଆସନ୍ତି, କେମିତି ଧଡ଼ପଡ଼, ଅଖିଆ ଅପିଆ ଝାଳ ଗାଳ ହୋଇ କେତେଟା ଅଫିସର ହାଉଜାଉ ହେଉଥାନ୍ତି । ଦିନ ନାହିଁ ରାତି ନାହିଁ ଖଟନ୍ତି ।

ବୁଢ଼ା ମାଗତା ଗନ୍ତେଇତ ହେ ହେ ହୋଇ ହସି ହସି କହିଲା, ସେଇଟା ଚାକିରୀ ବଞ୍ଚେଇବା, ଉପରକୁ ଉଠିବା ଲାଗି ଖୋସାମତି ହେ । ତମେ ମାଷ୍ଟ୍ରେ, ଆଲୁଟା ବୁଝିଚ !

ହେଲେ ଅଧ୍ୟାପକ, ମାଷ୍ଟ୍ରି ଚାକିରୀ କଲା ଲୋକ କାହାକୁ ଖୁସି କରି କିଛି ହେବାର ଆଶା ନ ଥାଇ ମଧ୍ୟ ଏପରି ଖଟିବାର ଆମେ କେବେ ଦେଖିନୁ । ତମେ କଣ ଅଧିକାଟା କରୁଚ କହିଲ ମାଷ୍ଟ୍ରେ ?

ରାଗରେ ଶିବ ମାଷ୍ଟ୍ରଙ୍କର ଗୋଡ଼ ହାତ ଥରି ଉଠିଲା । ସେ ତମ ତମ ହୋଇ କହିଲେ, ତମେ ଆଉ କଣ କଲ ? ତମେ ତ ଏ ସହରରେ ତିରିଶି କି ପଞ୍ଚତିରିଶି ହଜାର ଲୋକ ଥିଲ, ଏକା ସେ ସ୍ତ୍ରୈଣ ଅଧ୍ୟାପକଟା କଟକରୁ ଆସି ଏତେ କଥା କରିଦେଲା ।

ମାଗତା ବୁଢ଼ା ସମାଧାନ ସୂଚକ ସ୍ୱରରେ କହିଲା, ପ୍ରଶଂସା କି ପ୍ରମୋଶନ ଆଶା ନଥାଇବି ମନରୁ କାଢ଼ି, ଦେହ ଲଗେଇ ଏପରି ଦେଶକାମ କରିବା ଅଫିସର ଏ ଦେଶକରେ ମୁଁ ବେଶି ଦେଖିନାହିଁ ।

'ଅଫିସର ସିନା ଦେଖିନ, ଅଣ-ଅଫିସର ଏମିତି କାମ କଲାବାଲା କେତେଟା ଦେଖିଚ, ଗୁପ୍ତରେ ମାତରଖି କହିବଟି!'

ଶିବ ମାଷ୍ଟ୍ରେ ବିରକ୍ତ ହୋଇ ଚାଲି ଯିବାକୁ ବାହାରିଲେ ।

ଯୋଗାଣ ବିଭାଗ ସୁପ୍ରିଭାଇଜର ଦୟାନିଧି ଖାଡ଼ଙ୍ଗା ଟିକିଏ ଦୂରରେ କଦମ୍ବ ଗଛ ଛାଇତଳେ ଜଣେ ଧାନ ବେପାରୀ ସହିତ ଫୁସୁରୁ ଫାସର ହେଉ ହେଉ ଏ ଆଡ଼େ କାନ ପାତିଲେ । ଧାନ ବେପାରୀ କିଛିଟା ପୂର୍ବପରି ଏକ ଲୟରେ କହି ଚାଲିଥିଲା— ତା ହେଲେ ମୁଁ ଦି ଚାରି ଜଣ ଚାଷି ଯୋଗାଡ଼ କରୁଛି । ତାଙ୍କ ସହିତ ବାଗେଇ ବୁଜେଇ କଥାବାର୍ତ୍ତା କରିବି । ସେମାନେ ଦରଖାସ୍ତରେ ଦସ୍ତଖତ କରିବେ । ପରମିଟ ତାଙ୍କ ନାଁରେ ଆସିବ । ବାକି କାମ ମୋର । କଲକତା ଯିବା ଦରକାର ନାହିଁ । ସେଠି ଲୋକ ଅଛନ୍ତି । ଯୁଦ୍ଧ ସମୟ । ସବୁ ହେଇଯିବ । ସେମାନେ ବିକିବାକି ଟଙ୍କା ପଠାଇ ଦେବେ । ରହିଲା ଏଠା ଅଫିସ କଥା । ଅଫିସ ଓ ଅଫିସର, ଏ ଦି ଜାଗା କଥା ଆପଣ ବୁଝିବେ । ଆଉ କିଛି ନ ହେଲେ ଲେଭି ବାବଦ ଷଡ଼ିଟା ତ ଲାଭ ହେବ ।

ଦାୟାନିଧି ଖାଡ଼ଙ୍ଗା ତା କଥାରେ ଆଦୌ କାନ ଦେଉ ନାହାନ୍ତି ବୋଲି ଦେଖେଇ ହେବାକୁ ଶିବ ମାଷ୍ଟ୍ରଙ୍କ ଆଡ଼କୁ ଚାହିଁ ବଡ଼ ପାଟିରେ ଡାକଲେ, ମାଷ୍ଟ୍ରେ ଶୁଣ ! ଏତେ ରାଗନା ହେ, ଶୁଣ । ଶିବ ମାଷ୍ଟ୍ର ଚାରି ପହଣ୍ଡ ପଛେଇ ଆସି ଓଲଟି ଚାହିଁଲେ ।

କଣ ?

ଶୁଣିଲ ମାଷ୍ଟ୍ରେ, ଏ ସହରରେ କେତେକ ଲୋକ ଦେଖି ସହି ପାରନ୍ତି ନାହିଁ ବୋଲି ସିନା ଏଠିକାର ତରୁଣ ଅଧ୍ୟାପକମାନଙ୍କ ନାରେ ଗୁଡ଼ାଏ ବାଜେ କଥା ଗପନ୍ତି । ସମାଲୋଚନା କରି କହନ୍ତି— ପାଠ ସିନା ପଢ଼ିଛନ୍ତି, କାଣ୍ଡଜ୍ଞାନ ନାହିଁ । ସଭା ସମିତିରେ ଏକା ଆସନରେ ବସିବା ଭଳି ଆପଣା ଲୋକଙ୍କ ଭିତରେ ବାଡ଼ ପକାନ୍ତି । ଉପରେ ପଡ଼ି ବଡ଼ ବଡ଼ କଥା ବକ୍ତୃତା ଦେବାକୁ ବାଡ଼ଆ ବାଡ଼େଇ ହୁଅନ୍ତି । କଣ୍ଠା ପକାଇ କଳି କରନ୍ତି । ମିଛରେ ଶକ୍ତି କ୍ଷୟ କରନ୍ତି । ଧସ୍ତା ଧସ୍ତି

ହୁଅନ୍ତି । କିନ୍ତୁ ପ୍ରକୃତରେ କଣ ସେ କଥା ସତ ? ଦେଖ ଗଡ଼ନାୟକଙ୍କୁ । କେଡ଼େ ଧିର, କେଡ଼େ ନମ୍ର । ଦେଶର ମଙ୍ଗଳ ପାଇଁ ହାତରୁ ପଇସା ସାରି, ଯାଙ୍କୁ କହି, ତାକୁ କୁହାଇ କେତେ କାମ କରାଇ ନିଅନ୍ତି । କାଲି ତ ଦେଖିଲ, ଗୁଡ଼ାଏ ମେଞ୍ଚଡ଼ ଟୋକାଙ୍କୁ ଏକାଠି କରି କେମିତି ଗୋଟାଏ ଠାଉଁ ଠାଉଁ ହଇଚଇ ପକାଇ ଦେଲେ ଏ ସହରରେ ।

ପାନ ଦୋକାନି ସୁନାଧର ଗଉଡ଼ ପାନ ଭାଙ୍ଗି ଭାଙ୍ଗି ସବୁ ଶୁଣୁଥିଲା । ଏକା ଥରକେ ଆଞ୍ଜୁଳେ ହେବ ପାନ ଛେପ ଛୋକଦେଇ କହିଲା, ସମସ୍ତେ ସେମିତି ହେଲେ ତ ଏ ଦେଶ ସୁନା ହୋଇ ଯାଆନ୍ତା । ନାହାନ୍ତି କାହିଁକି ? ଆପଣ ଆଜ୍ଞା ଜାଣି ନାହାନ୍ତି । ସେ ଦିନ ପରା ପାନ ଭାଙ୍ଗୁ ଭାଙ୍ଗୁ ଦି କାନରେ ଶୁଣିଛି, ତାଙ୍କ ନା ଠା ମୁଁ ଜାଣିନାହିଁ, ଆଖି ମିଟିମିଟି କରି ହାତ ହଲେଇ ହଲେଇ ଆଉ ଦି ଜଣକୁ କହୁଥିଲେ, ହଁ ହେ ଚୀନା ମାଡ଼ିଆସୁ । ଏମାନଙ୍କଠୁ ସେମାନେ ଆହୁରି ଭଲ ଶାସନ କରିବେ ।

ଏତିକି କହିଦେଇ ପାଟି କାମୁଡ଼ିଲା ସୁନାଧର ଗଉଡ଼ । କେଡ଼େ ଅନ୍ୟାୟ କଥା, କେଡ଼େ ପାପ କଥା ସେ କହୁଛି, ନିଜକୁ ନିଜେ ଧିକ୍କାରିଲା ।

ଉମୁର ପଞ୍ଚାୟତ ସମିତିର ସଭ୍ୟ ଧନ ରଣା ଶିବ ମାଷ୍ଟ୍ରଙ୍କ କାଖରୁ ଛତାଟା ଛଡ଼େଇ ଆଣି ସୁନାଧର ଗଉଡ଼ ମୁଣ୍ଡରେ ହେଚା ଦେଇଥାନ୍ତା, ରଙ୍କ ଦିଲେଇ ପିଉଥିବା ସୋଡ଼ା ବୋତଲଟାକୁ ଥୋଇଦେଇ ହାଁ ହାଁ କରି ଧରି ପକେଇଲା । ଧନ ରଣା ପାଟିକରି ଉଠିଲା, କହ କୁ ଶଳା ଏ କଥା କହୁଥିଲା ? ସେ ପଞ୍ଚମ ବାହିନୀର ଲୋକ । ତାର ତାଳୁ ଫଟେଇ ଦେବି । ତାକୁ ପୁଲିସ୍‌ରେ ଦେବି ।

ସୁନାଧର ପ୍ରମାଦ ଗଣିଲା । ଆଉ ପାଟି ଫିଟେଇଲା ନାହିଁ । ମୁହୂର୍ତ୍ତେ ବିତିଗଲା ପରେ ଗେଲେଇ ହୋଇ କହିଲା, ହେଲେ ତାକୁ କଣ କଲେଜ ପିଲାଏ ଛୁଡ଼ଦେଲେ କି ? ସେମାନେ ମୋ ଦୋକାନକୁ ପାନ ନେବାକୁ ଆସି ତ ସବୁ ଶୁଣୁଥିଲେ । ଏମିତି ବେଫଜିତ୍ କରିଦେଲେ ଯେ ବାଟ ଅଣ୍ଟିଲା ନାହିଁ ସେ ପଳେଇଲା । ଶଳା ଦେଖେଇ ହେଉଥିଲା ଜାଣିମା ପଣିଆ । ପଣ୍ଡିତ ପୁଅ ପାଠ ପଢ଼ିଛି, ଏ ମେ ଏ··· ଛି ଛି ବିବେକ ବିଚାର ନାହିଁ ଏ ଲୋକଗୁଡ଼ାକର ।

ହେଁ ହେଁ ହୋଇ ସମସ୍ତେ ହସିଲେ ।

"ନାଇଁ ନାଇଁ ହସୁଚ କଣ ? ଏମିତିଗୁଡ଼ାଏ ଲୋକ ବି ଏ ଦେଶର ଡାଳେ ଡାଳେ ପତ୍ରେ ପତ୍ରେ ଏ ପଟ ସେ ପଟ ହେଉଛନ୍ତି । ସରକାରୀ କଳ ଭିତରେ ଗୁଳକାରୀ କରି ପେଟ ପୋଷୁଛନ୍ତି ବୋଲି ବଡ଼ ପାଟିରେ କହୁ ନ କହୁଁଲେ ବି ଭିତରେ ଭିତରେ କାନ୍ଥରେ କଣା କରି ଦେଉଛନ୍ତି । ଏମାନେ ଶତ୍ରୁ ଦେଶର ଦଲାଲ୍‌ମାନଙ୍କ ସହ ସଲାସୂତ୍ର ହୋଇ ଭୁନ ଚାନ କହୁ ଯେ କରୁ ନଥିବେ, କହି ହେବନାହିଁ । ହେଲେ ଆଖି ରଖିବାକୁ ହେବ । ଏମିତି ବିଶ୍ୱାସଘାତକ, ଦେଶଦ୍ରୋହୀ ଲୋକଙ୍କୁ ପାଇଲେ, ସିଧା ଥାନାକୁ ନେଇ ଯିବାକୁ ହେବ । ପଦାରେ ପକେଇ ହାନସ୍ତା କରେଇବାକୁ ପଡ଼ିବ ।"

ଶିବ ମାଷ୍ଟ୍ରେ କହୁ କହୁ ନିଶ ଅଣ୍ଡାଳିଲେ । ଦୟାନିଧି ଖାଡ଼ଙ୍ଗା ଆଉ ଟିକିଏ ପାଖକୁ ଆସି କହିଲେ, ପ୍ରତିରକ୍ଷା ପାଣ୍ଠି ପାଇଁ ଦାନ ସଂଗ୍ରହ ବେଳେ ଗରୀବଙ୍କୁ ପୀଡ଼ା ଦିଆଯାଉଛି ବୋଲି ଯେ ପ୍ରଚାର ହେଉଛି, ତାହା ବି ଏମାନଙ୍କର କାମ ।

ଧନ ରଣା କହିଲା, ହେଁ ହେଁ ସହରିଆ ବଡ଼ ବାବୁମାନେ, ଯେଉଁମାନେ ଅନ୍ୟକୁ ଶୋଷଣ କରି ଧନ ଜମେଇଛନ୍ତି, ସୁନା ଗହଣା ଗଢ଼େଇ ଗଢ଼େଇ ସାଇତିଛନ୍ତି, କଣ ଯେ ଦେଇ ପକାଉଛନ୍ତି, କହିଲି । ଯାହା ଦେଉଛନ୍ତି ମଫସଲିଆ । ସେମାନେ କାହିଁକି ପାଟି ଫିଟାନ୍ତେ । ଯେତେ ଚପେଇସାଇତିଆ ଲୋକ, ଯାହାଙ୍କଠି ଲକ୍ଷ ଲକ୍ଷ ଅଛି, ଅଥଚ ଅକାଳେ ସକାଳେ ଭଲପାଇଁ ପଇସେ ଦେବାକୁ ପଡ଼ିଲେ ହାତରେ ନିଦ ହୁଏନାହିଁ, ସେଇମାନେ ହିଁ ପାଟି କରନ୍ତି । ନିଜ ପକ୍ଷ ବଢ଼େଇବାକୁ ଅନ୍ୟମାନଙ୍କୁ ମିଛ ସତ କହି ମତାନ୍ତି ।

ମାଗତା ଗନ୍ତେଇତ ନଳଗଣ୍ଠି ଘା ଗୁଡ଼ିକରୁ ଶୁଖିଲା ବକଳା ଛିଣ୍ଡାଉ ଛିଣ୍ଡାଉ କହିଲା, ନାଁ କରିବେ ବୋଲି, ଉପରେ ବାଲିଙ୍କଠୁଁ ପ୍ରଶଂସା ଶୁଣିବେ, ଉପାଧି ପାଇବେ ବୋଲି କିଏ କେମିତି ନରମାଖି ଲୋକ ଦେଖି ଧମକ ଚମକ ଦେଇ ଅଧିକା ପାଣ୍ଠି ଆଦାୟ ଲାଗି ଚେଷ୍ଟା ଯେ କରି ନଥିବେ, ଏମନ୍ତ ନୁହେଁ । ହେଲେ ବହୁତ ଲୋକ ତ ଦେଶରକ୍ଷା ପାଣ୍ଠିକୁ ଦାନ ଦେବାକୁ ଉବୁଡ଼ା ପଡ଼ୁଛନ୍ତି, ଏ କଥାକୁ କିଏ ଝାଳି ପାରିବ ନାହିଁ । ସେ ଦିନ ପରା ମୋ ସାନ ଝିଅ, ତା କାନର ସୁନାଫୁଲ ବିଟା ଦେଇ ଆସିଛି । ବାକି କଥା ଗୁଡ଼ । ସେ ପ୍ରତିଜ୍ଞା କରିଛି, ଜନ୍ମମାଟିରୁ ଦୁଷ୍ଟ ଚୀନ୍‌ମାନେ ନ ହଟିଗଲା ଯାଏ ସେ ଆଉ କାନଫୁଲ ପିନ୍ଧିବନାହିଁ ।

ଅଗାଧୁ ସଉରା ଖରା ମଝିରେ ଆସିବା ଦେଖି ଠିଆହୋଇ ପଡ଼ିଲା । ଦି ପିଣ୍ଟୁ ଉପରେ ଲୁଗାରୁ ଧୂଳି ଝାଡୁ ଝାଡୁ କହିଲା, କେତେ ପ୍ରକାର ଲୋକ କେତେ ପ୍ରକାର

କଥା କହୁଛନ୍ତି । ଅଫିସର, ଅଣ-ଅଫିସରମାନଙ୍କ ଭିତରେ ଯେ ମନ୍ଦ ଲୋକ ନାହାନ୍ତି, କିଏ କହିଲା ! କେତେ କଥା ଶୁଣା ଯାଉଛି । ହେଲେ ଭାଇ ଦେଖ— ଗୋଳକାଳେ ଷୋଳ ବାର୍ତ୍ତା । ତମେ ଭାଇ ନିଜେ ଦି ଆଖିରେ କିଛି ଦେଖିଛ କି, କହ । ଯଦି ଦେଖିନ, ପାଟି ବନ୍ଦ କର । ବିପତ୍ତି ସମୟ । ଅକାରଣରେ, ଅଦରକାରି ବାଜେ କଥା ପାଟିରୁ ଖସେଇ, ବଡ଼ପଣିଆ ଜାହିର କରିବା ପାଇଁ ସ୍ୱାଡ୍ଡୁ ସାଡ୍ଡୁ ଗୁଡ଼େ ମନଗଢ଼ା କଥା କହି ସମୟ ନଷ୍ଟ କରନାହିଁ ! ଅକାଳରେ ସଭିଏ ସତର୍କ ହେବା ମଙ୍ଗଳ । ଶୁଣ ମୁଁ କହୁଛି, କିଏ କିନ୍ତୁ ଯଦି ସେମିତି ଶୁଣିଲ, ଆଗ ପଚାରିବ ଗଳ୍ପନାୟକଙ୍କୁ, ନ ହେଲେ ଆମେ ଯେଉଁ ନେତାମାନଙ୍କୁ ବିଶ୍ୱାସ କରୁଥାଇଁ, ସେଇମାନଙ୍କୁ ପଚାରି ବୁଝ । ତେଣିକି ଭଲ ମଣିଲେ ଏ ଭୁଣ୍ଡି କଥା ସେ କାନକୁ ନିଅ । ନ ହେଲେ ସେଇଠି, ଯେଉଁଠି ଶୁଣିଲ ସେଇଠି ସେ କଥାକୁ ଭୁଲିଯାଅ । ଏଇଟା ହେଉଚି ବିପତ୍ତି ବେଳର କର୍ତ୍ତବ୍ୟ । କଣ କହୁଛ ?

'ସତ ।' ଦସ୍ଥାନିଧି ଖାଡ଼ଙ୍ଗା ସାଇକଲ ପେଡ଼ାଲରେ ବାଁ ପାଦଟାକୁ ରଖିସାରି କହିଲେ, ଦେଖୁଚ ପରା, କୁଆଡେ ଏ ଲୋକଗୁଡ଼ାକ ପାଟି କରୁଛନ୍ତି, ଓଡ଼ିଶାରୁ ବଙ୍ଗଳାକୁ ଧାନ ଚାଉଳ ପଳେଇ ଗଲାରୁ ଦର ବଢ଼ି ଯାଉଛି, ଦୁର୍ଭିକ୍ଷ ପଡ଼ିବ ! ହଇ ହେ, ଝାଳ ଲାଳ ହୋଇ ଯେଉଁ ଚାଷି ବିଚରା ଆଷାଢ଼ ମାସର ରଙ୍ଗ ରଙ୍ଗ ବର୍ଷାରେ ଅଣ୍ଟା, ପିଠି ନୁଆଁ ଇ ଆଣ୍ଠୁଏ କାଦୁଅରେ ଦହସିତ ହୁଏ, ସିଏ ଦି ପଇସା ଯଦି ହାତରେ ନ ପାଇବ, ମେହେନତ କରିବ କାହିଁକି ? ତମେ ତ ଛଅ କୁ ନଅ କରି ପିଣ୍ଡାରେ ବସି ରୋଜଗାର କରିବା ଲୋକ; ପଇସେ ଅଧିକା ଦେଲ, ତମଠି ଥିଲି ଦେଲ, ସେଥିରେ ଏତେ ବାଧିଯାଉଛି କାହିଁକି ? ତମପେଇଁ ସରକାର ତ ଡିପୋ ଖୋଲି ଦେଇଛନ୍ତି, କଣ ମନଇଚ୍ଛା । ଭୁଚ୍ଛାକୁ ପାଟି ଭୁଣ୍ଡି କାହିଁକି ?

ଆଖି ମିଟି ମିଟି କରି ଧନ ରଣା ଆରମ୍ଭ କଲା, ଓଡ଼ିଶାର ଚାଷି ବଙ୍ଗଳାକୁ ଧାନ ଚାଉଳ ପଠେଇ ଯଦି ଦି ପଇସା ପାଉଥାନ୍ତା, ପାଟି ଫିଟେଇବାର ନଥିଲା । ଚାଷି ନାଁରେ ବେପାରି ଯଦି ଗୁଡ଼ାଏ ଫାଇଦା ଉଠାଉଛି, ଚଢ଼ାଦର ମାରି ନେଉଛି, ହାଲସନ୍ତ ହେଉଛନ୍ତି କିଣିଖିଆ, କହିବୁ ନାହିଁ କି ହେ ? କି କଥା କହୁଛ ଯେ! ବାଃ...

ଦସ୍ଥାନିଧି ଖାଡ଼ଙ୍ଗା ଆହୁରି କଣ କହିଥାନ୍ତେ । କିନ୍ତୁ କଦମ୍ବ ଗଛ ସେ ପାଖରେ ଗୋଇନ୍ଦା ପୁଲିସ୍ ପଇଁତରା ମାରୁଥିବା ଦେଖି, ଏକା ନିଶ୍ୱାସକେ ସାଇକେଲ ଚଢ଼ି ଛୁ ।

ପାପ କଲି ମଣିଷ ମନର ଡରକୁଳା ପଣକୁ ଆପଣା ଭିତରେ ଠଉରେଇ ଦୟାନିଧି ଖାଡ଼ଙ୍ଗା ସାଇକଲ ଚଳେଇ ଯାଉ ଯାଉ ମନ୍ଦି ମନ୍ଦିରେ ବୁଦ୍ଧେଲେଖେ ହସି ପକାଉ ଥିଲେ ।

ନୂଆବନ୍ଧ ସାହିର ଟିକିଏ ପଢ଼ାଶୁଣା କରିଥିବା, ଚାରି ଜାଗା ବୁଲି ଚାଲି ଚାରି କଥା ଜାଣିଥିବା ଧୋବ ଧାଉଳିଆ ବ୍ୟକ୍ତି ଧନସାଇ ବାରିକର ଦେହ, ମନ ଜ୍ୟେଷ୍ଠ ମାସର ଖରାବେଳିଆ ନଈ ବାଲି ପରି ତାତି ଯାଇଥିଲା । ରାଗର ଧାସ ଆଖିବାଟେ ଜୁଳୁଜୁଳିଆ ପୋକ ହୋଇ ବାହାରି ଯାଉଥିଲା ପରି ତାକୁ ଲାଗୁଥିଲା । ସେ ଅସ୍ତବ୍ୟସ୍ତ ଭାବରେ ମୁଣ୍ଡଖାଙ୍କି ପାଟି କରିବାକୁ ଲାଗିଲା—

ତୋତେ ହାଣିଦେବି, ଦି ଗଡ଼ କରି ଚୁଲ୍ଲୀରେ ପୁରେଇ ଦେବି, ତୋ ମୁଣ୍ଡକୁ ଛେଚି ଦେବି, ଚୋବେଇ ରଗଡ଼ି ଟିକି ଟିକି କରି ଗିଳି ଦେବି, ତୋର ରକ୍ତ ପିଇବି, ତୋର ମଲା ଭାକୁର ମାଛର ଆଖି ପରି ଶେଠୁଆ ଆଖି ଦି ଟାକୁ ତାଡ଼ି ଫୋପାଡ଼ି ଦେବି, ମେରୁହାଡ଼ ଭାଙ୍ଗି ଦେବି ଯେ ରାତ୍ରି ଆଉ କୁଆଡ଼େ ଯାଇ ଆସି ପାରିବୁ ନାଇଁ । ତୋତେ ଆହୁରି କଣ କରିବି ଜାଣୁ ? ତୋତେ···

ପାଟି କାମୁଡ଼ୁ କାମୁଡ଼ୁ ଧନସାଇ ବାରିକ ଟିକିଏ ଦମ୍ ନେଲା । କପାଳରୁ ଝାଳ ପୋଛୁ ପୋଛୁ ଶୋଇବା ଘର ଭିତରକୁ ପଶିଗଲା ।

ଧନସାଇ ବାରିକର ବଡ ବାପା ଯେତେବେଳେ ରଜା ଘର ଘୋଡ଼ା ଜଗୁଥିଲା— ସେ କେଉଁ କାଳର କଥା; ହେଲେ ସେତେବେଳଠୁଁ ଭାଡ଼ ଉପର ଚାଳରେ ଖୁଞ୍ଚା ହୋଇଥିବା ଲମ୍ବା ଘୋଡ଼ା କୋରଡ଼ାଟା ସେ ଏଇ ସାତ, ଆଠ ଦିନ ତଳେ ବାହାର କରି ଝାଡ଼ିଝୁଡ଼ି, ଜଡ଼ା ଲଗେଇ ଶୋଇବା ଘର କାନ୍ଥରେ ଓହଳେଇ ଦେଇଥିଲା । ଏବେ ଆଖିରେ ପଡ଼ିବାରୁ ଚାବୁକ୍‌ଟାକୁ ଆଣି ହାତରେ ଧରିଲା । ଠିଆହୋଇ କବାଟ ଉପରେ ସଡ଼ାସ୍ ସଡ଼ାସ୍ ପାହାର ବସେଇଲା ।

ଦି ତିନି ବରଷ ତଳେ ଧୋବା ସାହି ଆଶ୍ରମ ସ୍କୁଲର ମାଷ୍ଟ୍ରାଣୀ ଥିବା ମିସ୍ ମଞ୍ଜୁମାଳା, ସେ ଧନ ବାରିକର ରକ୍ଷିତା କି ବିବାହିତା ଅନେକ ଲୋକ କହି ପାରିବେ ନାହିଁ । ମଞ୍ଜୁମାଳାର ବାପ ଘର ମଧ୍ୟ-ପ୍ରଦେଶର ବସ୍ତର ଜିଲ୍ଲାରେ ଓ

ଧନ ବାରକ ଅନେକ ବର୍ଷ ଧରି ଆସାମ ଗୁହା ବଗିଚ୍ଚରେ କାମ କରିବାକୁ ଚାଲି ଯାଇଥିଲା । ତାର ବାପ ମା ଆତ୍ମୀୟ ସମସ୍ତେ କିଏ କୁଆଡ଼େ ମରି ହଜି ଛିନ୍ନଛତ୍ର ହୋଇ ଗଲେଣି । ହେଲେ ଲଗ୍ ଲଗ୍ ଚାରି କି ଛ ବର୍ଷ ହେଲାଣି ଏ ଦ୍ୱି ଜଣ ନୂଆବନ୍ଧ ସାହିରେ ଏକାଠି ରହୁଥିବା କଥା ସହରର ବଡ଼ ସାନ ପ୍ରାୟ ସମସ୍ତେ ଜାଣନ୍ତି । ବେଳେ ବେଳେ ସହରର ବଡ଼ ବଡ଼ଆମାନେ ବି ମୁହଁ ଅନ୍ଧାର ବେଳ ଦେଖି ସେ ଆଡ଼କୁ ଯାଇଥାନ୍ତି ।

ସଡ଼ାସ୍, ସଡ଼ାସ୍, ସଡ଼ାସ୍, ସଡ଼ାସ୍ ।

ଧନସାଇ ପୁଣି ଥରେ ଚୁଲିତଳ ଧୂଆଁ ଧରିା ପୁରୁଣା ଶାଳ କାଠର କାଳିଆ ଶେଣିଟାକୁ କୋରଡ଼ା ପ୍ରହାର କଲା ।

ମଞ୍ଜୁମାଳା ଏଥର ଫମ୍ପା ମଦ ବୋତଲଟିକୁ ଖଟ ତଳକୁ ଗଡ଼େଇ ଦେଇ ଗର୍ଜି ଉଠିଲା, କାହିଁକି ? ତୁ ମୋତେ ମାରିବୁ ହାଣିବୁ କାହିଁକି ? ଆରେରେ ସତେ ମୋର ବାହା ହେଇଥିବା ଘଇତା ହେଇଚି, ପୋଷୁଚି ପାଳୁଚି ଯେ ମାରିବ ? କିଏ ରେ ତୁ ବାରବୁଲା କୁକୁର ! ତୋର ଯଦି ମନ ପାଉନାହିଁ, ଯା ପଳା ଏ ଘରୁ, ପଳା । ଯା ଯେଉଁଠି ରହିବୁ, ଯେଉଁଠି ଖାଇବୁ ସେଇଠି ମରିବୁ ଯା । ମୁଁ ତୋର ମାଇପ ନାହିଁ ଯେ ତୁ ମୋ ଉପରେ ଟାଣ ଦେଖାଇବୁ ? ଯା ପଳା ଯା । ମଦୁଆ, ଜୁଆଗ୍ଝେର··· ଦଗାବାଜ୍··· ହେଁ ହେଁ··· ନ କହିଲା ବେଳକୁ···

ସେ ଧନସାଇକୁ ଘର ଭିତରୁ ଏକାବେଳକେ ବାହାରକୁ ପେଲିଦେଇ କବାଟ କିଳିଦେଲା । ଅନେକ ସମୟ ଧରି ଧନସାଇ କବାଟ ବାଡ଼େଇଲା, ପାଟିକଲା, ହାତ ଗୋଡ଼ କଚାଡ଼ି ହେଲା, ମୁଣ୍ଡରେ ମୁହଁରେ ଠାଇ ଠାଇ ଚାପୁଡ଼ା ମାରିହେଲା । ତଥାପି ମଞ୍ଜୁମାଳା କବାଟ ଖୋଲିଲା ନାହିଁ ।

କେବେ କେବେ ଭଲ ମନ୍ଦ ଦିନରେ କି ବାହାରୁ କିଏ ଆସିବାକୁ ଥିଲେ ଧନସାଇ ଘରେ ମଦ ବିକାହୁଏ ବୋଲି ପୁଲିସ୍‌ବାଲା ଜାଣିଥିଲେ; ଅବକାରୀ ବିଭାଗର କେହି କେହି, କେତେଜଣ ସାମ୍ବାଦିକ ଓ କେବେ କେମିତି ମଦ ପିଉଥିବା ଭଦ୍ର ବ୍ୟକ୍ତିମାନେ ମଧ୍ଯ ଊଣା ଅଧିକେ ଏ ପ୍ରକାର ସମ୍ବାଦ ସହିତ ପରିଚିତ ଥିଲେ ।

ଯେତେବେଳେ ବହୁ ସମୟ ଧରି ବକର ବକର ହୋଇ ବାଡେଇ ପିଟି ହେଉ ହେଉ ହାଲିଆ ହୋଇଗଲା, ଧନସାଇ ମୁଣ୍ଡରେ ହାତ ଠେକେଇ କାନ୍ଥକୁ ଆଉଜି ବସି ପଡ଼ିଲା । ପାଞ୍ଚ ମିନଟ୍ ଯାଇଛି କି ନାହିଁ ଜଣେ ପୁଲିସ୍ ଅଫିସର,

ଜଣେ ସାମ୍ବାଦିକ ବନ୍ଧୁ ଧୀର ପଦରେ ଆଗେଇ ଆସି ସେହି ପିଣ୍ଡା ପାଖରେ ଠିଆ ହେଲେ । ସତେ ଯେମିତି ଏମାନେ କୌଣସି ପରିଚିତ ପଦାର୍ଥର ବାସ୍ନା ବାରୁଛନ୍ତି ।

ଏପରି ଗୋଟାଏ ଅସ୍ପଷ୍ଟ ଅସମୟରେ ଏହି ପରିଚିତ ଲୋକଗୁଡ଼ାକୁ ଦେଖି ଧନସାଇ ବାରିକର ତାଳୁରେ ନିଆଁ ଲାଗିଗଲା । ଏ ଦେଶରେ ଶାସନ ଓ ଆଇନ୍ କାନୁନ୍ ଯଦି ନଥାନ୍ତା, ସେ ହୁଏତ ଏ ଦିଟା ଅବାଞ୍ଛିତ ଲୋକଙ୍କ ମୁଣ୍ଡ ଦିଟାକୁ ଶିଳପୁଆରେ ଛେଚି ଛେଚି ଛତୁ କରି ଦିଅନ୍ତା । ତା ମନରେ ଏମିତି ରାଗ ଜାତ ହେଲା ! କିନ୍ତୁ ବାହାରକୁ ଏମାନଙ୍କ ଉପସ୍ଥିତିରେ କୌଣସି ବ୍ୟସ୍ତତା ଦେଖାଇଲା ନାହିଁ । ଆଉ ମୁହୂର୍ତ୍ତେ ମାତ୍ର ସେମାନଙ୍କୁ ସେ ଏଠାରେ ଦେଖିବାକୁ ଇଚ୍ଛା କରୁ ନଥିଲେ ମଧ୍ୟ ସୁସ୍ପଷ୍ଟ ଗଳାରେ କହିଲା, ଅନେକ ଦିନ ହୋଇଗଲା ମଞ୍ଜୁମାଳାର ଦେହ ଭଲ ନାହିଁ । କିଛି କାରବାର ନାହିଁ । ଆଜି ସେ ରାଗରେ କବାଟ କିଳି ଶୋଇ ପଡ଼ିଛି ।

ସେମାନେ ଏ ପ୍ରକାର ଉତ୍ତର କେବେହେଁ ଆଶା କରି ନଥିଲେ ।

ଆଚ୍ଛା, ହେଉ । କବାଟ ଖୋଲ । ଆମେ ଭିତରଟା ଦେଖି ଚାହିଁ ଚାଲିଯିବୁ ।

ଧନସାଇ ଆହୁରି ବିରକ୍ତ ହୋଇ କହିଲା, କହିଲି ପରା, ତାର ଦେହ ଭଲ ନାହିଁ । କାରବାର ବନ୍ଦ । ଆଜି ସେ ରାଗରେ କବାଟ କିଳି ଶୋଇଛି ।

ତାଙ୍କୁ ଉଠାଇ ଦିଅ । ଆମେ ଦି ପଦ କଥା ହୋଇ ଚାଲିଯିବୁ ।

ତମେ କବାଟ ଖୋଲି ଭିତରେ ପଶ । କଥାବାର୍ତ୍ତା କରି କି ଯାହା କର ।

ଏ ଲୋକଗୁଡ଼ାକର ମନରେ ସତକୁ ସତ ଟିକିଏ ହେଲେ ଦୟାମାୟା ନାହିଁ ।

ପୁଲିସ୍ ବନ୍ଧୁଙ୍କ ଭାରୁଆ ବୁଟ୍ ପିନ୍ଧା ପାଦର ରୁକ୍ଷ ଧକ୍କା ଧଡ଼ାସ୍, ଧଡ଼ାସ୍ ହୋଇ ଦି ତିନି ଥର ବସିଛି କି ନାହିଁ, ମୋଳିଖିଆ ଦଦରା କବାଟର ଶିକୁଳି ଉପୁଡ଼ି ଗଲା । ପୁଲିସ୍ ଅଫିସର ଭିତରେ ପଶି କାବା ହୋଇଗଲେ । ଖାଲି ଟିଣ ଓ ବୋତଲ ଖଟତଳେ ଗଡୁଛି । ମଞ୍ଜୁମାଳାର ଦେଖାନାହିଁ ।

ଧନସାଇ ଚାରିଆଡ଼କୁ ନିରୀକ୍ଷଣ କରି କହିଲା, ରାଣ୍ଡି ବାରି କବାଟ ଖୋଲି ଚାଲିଗଲା ।

କୁଆଡ଼େ ଗଲା ?

ମାଜିଷ୍ଟ୍ରେଟ୍ ମହାପାତ୍ର ଘରକୁ ଯାଇଥିବ ।

ଢ଼ ବନ୍ଧୁ ପରସ୍ପର ଗୃହାଁ ଗୃହାଁ ହେଲେ । ଟିକଏ ଚୁପ ରହିବା ପରେ ଆଉ ଜଣକ ପଚାରିଲେ, ମାଜିଷ୍ଟ୍ରେଟ୍ ଘରକୁ କାହିଁକ ?

ଧନସାଇ ବାରିକ ଗଳାରେ ଟିକଏ ବଡ଼ମଣିଆ ଦେଖାଇ କହିଲା, ମହାପାତ୍ରେ ନୂଆରେ ବଦଳି ହୋଇ ଆସିଛନ୍ତି । ଜୟପୁର ସହରରେ ସେ ଅଚିହ୍ନା, ଅଜଣା ଲୋକ । ମଞ୍ଜୁମାଳା ସହିତ ତାଙ୍କର ପରିଚୟ ହୋଇ ଯାଇଛି ଓ ତାକୁ ସେମାନେ ଭାରି ସ୍ନେହ କରନ୍ତି । ପିଲା ପିଲାଙ୍କ ଦେହ ପା ଅସୁସ୍ଥ ହେଲେ କ କୁଆଡ଼େ ଯିବା ଆସିବାକୁ ଥିଲେ, ଏ ଯା ଆସ କରେ ।

ଜଗୁଣା ଓ ବିଷ୍ଣୁପ୍ରିୟ ମନ ବଙ୍କେଇ ଢହେଁ ଖସି ଗୃଲଗଲେ ।

ଧନସାଇ ବାରିକ ଶିଶିର ମାରି ମାରି ଖଟ ଉପରେ ଗଡ଼ି ପଡ଼ିଲା । ମନ ଭିତରେ ସମୁଦ୍ର ଜୁଆର ଭଳି ମାଡ଼ି ଆସୁଥିବା ରାଗ, ଭୟ, ଘୃଣା, ଦ୍ୱେଷ, ହିଂସା ଓ ସନ୍ଦେହର ମିଶାମିଶି ପ୍ରବାହକୁ ଏଡ଼ାଇ ବଞ୍ଚି ରହିବା ପାଇଁ ସେ ଆଖିବୁଜି ଶୋଇ ପଡ଼ିଲା ।

ଗାଧୋଇ ପାଧୋଇ, ବାଳ ମୁକୁଳା କରି, ସଫା ସୁତୁରା ଚକଚକିଆ ସାୟା, ସାଢ଼ୀ, କାଞ୍ଚଳି ଭିଡ଼ି ଗଡ଼ଡ଼ ସାହିର, ବ୍ରାହ୍ମଣ ସାହିର, ମହାନ୍ତି ସାହିର, ସୁଣ୍ଡି ସାହିର ଝିଅ, ବୋହୂମାନେ ହାତରେ ଭୋଗେଇ, ଫୁଲ ଡାଲା ଧରି ସକାଳ ପହରୁ ମାଳ ଗୃଲଛନ୍ତି ।

ପୁରୁଣାଗଡ଼ ଶିବାଳୟରେ ଶିବରାତ୍ରୀ ଉତ୍ସବ, କେତେ ଲୋକ ଏକାଠି ହେବେ, ଯାତ୍ରା ହେବ । ମଞ୍ଜୁମାଳାର ମନ ଖଳ ଖଳ ହେଲା ।

ଜୟପୁର ସହରରେ ମଞ୍ଜୁମାଳାକୁ ଯେତେ ଲୋକ ଜାଣନ୍ତି, ସମସ୍ତେ ତାକୁ ଖ୍ରୀଷ୍ଟିୟାନ୍ ବୋଲି ଭାବନ୍ତି ନାହିଁ । କାରଣ ସେ ଗିର୍ଜାକୁ ଯିବା କି ବଡ଼ ଦିନ ପର୍ବ ପାଳିବା କେହି କେବେ ଦେଖି ନାହାନ୍ତି । ଏ ସହରର କୌଣସି ଖ୍ରୀଷ୍ଟିୟାନ୍ ପରିବାରସହିତ ମଧ୍ୟ ତାର ବନ୍ଧୁତା ନାହିଁ । ବରଂ ଧନସାଇ ବାରିକ ହିନ୍ଦୁ ହୋଇ ଥିବାରୁ ତାକୁ ମଧ୍ୟ ବହୁ ଲୋକ ହିନ୍ଦୁ ବୋଲି ବୁଝନ୍ତି । ମନ ଭିତରେ ଦ୍ୱନ୍ଦ ଜାତ ହେଉଥିଲେ ମଧ୍ୟ ମଞ୍ଜୁମାଳା ଦେବାଳୟକୁ ଯିବାଲାଗି ନିଷ୍ପତ୍ତି କଲା । ଦିଅଁ

ଦର୍ଶନ ହେଉ କି ନହେଉ, ଯାତ୍ରାର ମଜାଟା ତ ଦେଖିବ । ଯଦି ବା ତାକୁ କେହି କେହି ହରିଜନ ଶ୍ରେଣୀର ହିନ୍ଦୁ ବୋଲି ମନେ କରନ୍ତି, ତେବେ ବି ବାଧା ନାହିଁ । କାରଣ ହରିଜନଙ୍କୁ ମନ୍ଦିର ପ୍ରବେଶ ଅଧିକାର ଏ ଦେଶ ଦେଇ ସାରିଛି ଓ ସମସ୍ତେ ଏ କଥା ଜାଣିଛନ୍ତି ।

ମଞ୍ଜୁମାଳା ପଞ୍ଚାୟତ ସମିତି କାରଖାନାରେ ତିଆରି 'ସର୍ଓ୍ୱାନ ଚନ୍ଦନ ସାବୁନ୍' ଲଗେଇ ଦେହ ମୁହଁ ରଗଡ଼ି ମାଜି ଗାଧେଇଲା । ବଡ଼ ଦିନ ପର୍ବରେ ଖ୍ରୀଷ୍ଟିୟାନ୍ ରେଲ୍‌ୱେ କଣ୍ଟ୍ରାକ୍ଟର ବନ୍ଧୁ ପଠାଇ ଦେଇଥିବା ଲଣ୍ଡନ ତିଆରି ବାସନା ତେଲ ଲଗେଇ ମୁଣ୍ଡ କୁଣ୍ଡେଇଲା । କଲେଜ ପଢ଼ୁଆ ଝିଅଙ୍କ ପରି ଦୁଇ କାନ ଏ ପାଖରେ ଦୁଇଟି ବେଣୀ ଲମ୍ବେଇ ଟେବୁଲ ଦର୍ପଣରେ ମୁହଁ ଦେଖିଲା । ମୁସଲମାନ ବସ୍ କଣ୍ଡକ୍ଟର ସୁଲେମାନ ଇଦ୍‌ପର୍ବ ବେଳେ ପଠେଇ ଦେଇଥିବା କାଞ୍ଚି ତିଆରି ନକଲି ସମ୍ବଲପୁରି ସାଢ଼ୀଟି ପିନ୍ଧିଲା । ମାଜିଷ୍ଟ୍ରେଟ ମହାପାତ୍ର ଜନ୍ମ ଦିନରେ ଉପହାର ଦେଇଥିବା ଟଏଲେଟ୍ ସେଟ୍‌ରୁ ସ୍ନୋ ଲଗେଇଲା, ପାଉଡ଼ର ମାଖିଲା । ଦର୍ପଣରେ ଆଉଥରେ ମୁହଁ ଦେଖିସାରି ଭାବିଲା, ପ୍ରଥମେ କଂଗ୍ରେସ ଅଫିସ ଆଡ଼େ ଢେରେ ମାରିଦେଇ ସିଆଡ଼େ ସିଆଡ଼େ ଦେଉଳକୁ ଯିବ । ଯଦି କଂଗ୍ରେସ ଅଫିସରେ କେହି ସାଙ୍ଗ ଜୁଟିଯିବେ ତ ଭଲ, ନ ହେଲେ ମହିଳା ବିଭାଗର ଡାକତକ ଦେଖିଦେଇ ରିକ୍‌ସାରେ ଚାଲିଯିବ । ଭାବି ଭାବି ଅଗ୍ରସର ହେଲା । ଟିକିଏ ବାଟ ଗଲାପରେ ଖଦଡ଼ ସାଢ଼ୀଟା ପିନ୍ଧିନାଇ ବୋଲି କଂଗ୍ରେସ ଅଫିସ ଆଡ଼େ ଯିବାଲାଗି ଆଉ ମନ ତାର ମାନିଲା ନାହିଁ । ସିଧା ଚାଲିଲା ଦେଉଳକୁ ।

ମଞ୍ଜୁମାଳା ଅସଂଖ୍ୟ ସ୍ତ୍ରୀ ପୁରୁଷଙ୍କ ସ୍ରୋତ କାଟି କାଟି ପେଲି ଠେଲି ପଶି ଯାଉ ଯାଉ ଜୟପୁରର ବଶିଷ୍ଟ ଋଷି ବିଦ୍ଦରାଜ ବାବୁଙ୍କ ଝିଅ ଉମା ଦେହରେ ଛେସେଇ ହୋଇଗଲା । ଉମାର ଗୁଣ୍ଡରେ ଆଘାତଟା ଟିକିଏ ଜୋର୍‌ରେ ଲାଗିଗଲା । ସେ ନିଜକୁ ସମ୍ଭାଳି ନେଉ ନେଉ ବିରକ୍ତିରେ କହିଲା, ଆଖି ଦିଶୁନାହିଁ ପରା !

ମଞ୍ଜୁମାଳା ପଳେଇ ଯାଉ ଯାଉ ଏ କଥା ଶୁଣି ଫଁ ଫଁ ହୋଇ ଲେଉଟି ପଡ଼ି କହିଲା, ପାଟି ଗଲି ଗଲି ହେଉଛି କଲେ ? ଉଚ୍ଛୁଳି ପଡୁଛି ଧରମ ! ଦିଅଁ ଦରଶନକୁ ଆସିଚୁ ନା କଳି କରିବାକୁ ? ଅଣ୍ଡିରେଚଣ୍ଡୀ, ଅଲକ୍ଷଣି !

'ଦେଖା ଚାହିଁ'-ପରିଚୟ ଅଛି । ଦିହେଁ ଦିହିଁଙ୍କୁ ଜାଣନ୍ତି । ତଥାପି ଉମାର ଆଖି ଛଳ ଛଳ ହେଲା । ସେ ବାଘ ଶିକାରୀର ଅଗ୍ନିନଳ ଗୁଳି ମାଡ଼ରେ ଆହତ ଠେକୁଆ ଶିଶୁ ପରି ବିକଳରେ କବିତାର ମୁହଁକୁ ଚାହିଁଲା ।

କବିତା କହିଲା, ଚାଲ ଆସ! ଉମା କବିତାର କାନ୍ଧରେ ହାତ ଭରାଦେଇ ଜନ ଗହଳି ଭିତରୁ ବାହାରି ଆସିଲା ନିଘଞ୍ଚିଆ ସ୍ଥାନକୁ । ଦେଉଳ ବେଢ଼ାର ଗୋଟିଏ ପାଖକୁ ଗୁଞ୍ଜୁଗୁଞ୍ଜିଆ ଚମ୍ପାଗଛ ତଳଟା ବେଶ୍ ଆରାମପ୍ରଦ ମନେ ହେଉଥିଲା ।

ପୋକଖିଆ ପୂଜା ବେଲ ପତ୍ରଟିଏ, କେତୋଟି ଦରମଉଳା ଗଲିଣ ଫୁଲ, ଦୁବ ଧ କେଶ୍ର ଉମାର ଯୂଡ଼ାରେ ଖୁଞ୍ଚି ଦେଉ ଦେଉ କବିତା କହିଲା, ଗୋଟିଏ କଥା କହିବି ଶୁଣିବ ?

'କଅଣ ?'

'ପଛିଲେ ସାହସ ବାନ୍ଧିବାକୁ ହେବ ।'

'ହେଉ, କୁହ ।'

'ଆମର ସ୍ୱାଧୀନତା, ଆମର ମାନ ସମ୍ମାନ ରକ୍ଷା କରିବା ପାଇଁ ସୀମାନ୍ତରୁ ଚୀନାର ଦୁଷ୍ଟ ସୈନ୍ୟମାନଙ୍କୁ ତଡ଼ିବା ଯେତିକି ଦରକାର, ଦେଶ ଭିତରେ ଆପଣା ଘରର ଏହି ନଷ୍ଟ ଲୋକମାନଙ୍କୁ କଠୋର ଶାସନ ଭିତରେ ରଖିବା ସେତିକି ଦରକାର !'

'ସେଥିପାଇଁ ଆମେ କଣ କରିବା ?' ଉମା ନିରାଶ ହୋଇ କହିଲା ।

'ଆମେ ସମସ୍ତେ ସବୁ କଥା କରି ପାରିବା । ଭଗବାନ ଆମ ସମସ୍ତଙ୍କୁ ଏକା ଶକ୍ତି, ଏକା ସାମର୍ଥ୍ୟ ଦେଇଛନ୍ତି । ହେଲେ ଯିଏ ଯେଉଁ ଭାଗଟା ବେଶି ଉପଯୋଗ କରୁଛି, ସେ ସେଇ ଦିଗରେ ଯାହା ଇଚ୍ଛା କରି ପାରୁଛି ।'

'ହେଲେ କଣ କରିବା କୁହ ।'

'ଦେଖ ଉମା, ଆମେ ଯେତେ ଝିଅ ପାଠ ଗ୍ରନ୍ଥ ପଢ଼ିଚେ, ସମସ୍ତେ ଯଦି ଏତେ ବଡ଼ ସଂସାରର ଏହି ଗୃହଖଣ୍ଡିକର ଘର କରଣା ମଧ୍ୟରେ ହିଁ ଲମ୍ବା ଜୀବନଗୁଡ଼ିକୁ ଆଣ୍ଠୁଧିଦେଇ ଛଟପଟ ହୋଇ ହୋଇ ତୁନି ରହିବା, ହେବନାହିଁ । ଅନ୍ତତଃ କେଇଜଣ ଘର କରଣା ଗୁଡ଼ି, ନିଜ ଦେହ ମୁଣ୍ଡ, ନିଜ ଘର ଦ୍ୱାର କଥା ଭୁଲି ସମାଜ ପାଇଁ, ଦେଶ ପାଇଁ, ଜାତି ପାଇଁ କାମ ନ କଲେ ଚଳିବ ନାହିଁ । ଯଥେଚ୍ଛାଚାର ବଢ଼ିଯିବ । ସାମାଜିକ ନ୍ୟାୟ ନୀତି ସବୁ ଧୂଳିସାତ୍ ହୋଇଯିବ ।'

'ସତ, ହେଲେ ମୋତେ କଣ କରିବାକୁ କହୁଚ ?'

‘ତୁମେ ଚେଷ୍ଟାକଲେ ଅକ୍ଳେଶରେ ଜଣେ ବଡ଼ ନାରୀନେତ୍ରୀ ହୋଇ ପାରନ୍ତ ଉମା ! କଳ୍ପନା କରି ଦେଖତ, ତୁମେ ଜଣେ ମହିଳା ମନ୍ତ୍ରୀ ହୋଇ ଯଦି ଆଜି ଏ ଦେବାଳୟକୁ ଆସିଥାନ୍ତ, କେତେ ବଡ଼ ବଡ଼ଆ ତମ ପଛରେ ଗୋଡ଼େଇ ନଥାନ୍ତେ ? ଆଉ ଏ ଯେଉଁ ଦାନୁରି, ଝାମ୍ପୁରି-ମୁଣ୍ଡି ମାଇକିନାଟା ତମକୁ ଯା ଇଚ୍ଛା ତା କହି ଅପମାନ ଦେଇ ଚାଲିଗଲା, ସେ ହୁଏତ ତମର ଦର୍ଶନ ପାଇବାକୁ ଈଶ୍ୱରଙ୍କ ଠାରେ ଭୋଗ ଯାଚୁଥାନ୍ତା ! ଥରେ ଚେଷ୍ଟା କରି ଦେଖତ ଉମା ! ମନ୍ତ୍ରୀ ନ ହେଲ ପଛେ— କହିଲା କଥାକୁ । କିନ୍ତୁ ସମାଜର ଉପର ମୁଣ୍ଡରେ ଖଣ୍ଡିଏ ଆସନ ଜମେଇ ନ ବସିଲେ, ଚାନ୍ଦ ଆଡ଼କୁ ହାତ ପାଇବ ନାହିଁ, ଆଖି ପାଇବ ନାହିଁ କି ପାଟି ଶୁଭିବ ନାହିଁ ।’

ଉମା ଗଦ୍‌ଗଦ୍ ହୋଇ ତାର ଜ୍ୟୋତିର୍ମୟ ଆଖି ଦୁଇଟିର ସରଳ ଚାହାଁଣୀକୁ ଷଣ୍ଢ ଠେଲାରେ ଟଳି ପଡ଼ିଥିବା ପାଣିମାଠିଆ ପରି ଢଳେଇ ଦେଲା ଅଧ୍ୟାପକ ଗଡ଼ନାୟକଙ୍କ ପତ୍ନୀ କବିତା ଆଡ଼କୁ । ପାଠ ପଢ଼ି ନଥିବା ପୁରୋହିତ ମନ୍ତ୍ର ଉଚ୍ଚାରଣ କଲାଭଳି ସେ ଧିରେ ଧିରେ ଅସ୍ପଷ୍ଟ ଭାବରେ କହିଲା, ‘ତମେ ଏ ସହରକୁ ନୂଆରେ ଆସିଛ କବିତା ନାନି, ଏ ଲୋକମାନଙ୍କୁ ଚିହ୍ନି ନାହିଁ । ଏମାନେ ନିଜେ କିଛି କରିବେ ନାହିଁ କି ଆଉ କିଏ କିଛି କଲେ ସହି ପାରିବେ ନାହିଁ ।’

ବୁଢ଼ା ଚମ୍ପା ଗଛର ନଇଁଟିଆ ଗୁଳି ତଳେ ଉମା କବିତାର ଛାତିରେ ମୁହଁ ଗୁଞ୍ଜି ଦେଇ କହିଲା, ‘ତମେ ବଡ଼ ଭାଗ୍ୟବନ୍ତୀ କବିତା ନାନି ! କିନ୍ତୁ ମୋ ଜନମଟା ମୁଠେ ଧୂଳି କି ପାଉଁସ ସାଙ୍ଗରେ ବି ସମାନ ହେଲିନାହିଁ । କିଛି ମୁଁ କରି ପାରିଲି ନାହିଁ କି ନିଜେ କିଛି ହୋଇ ପାରିଲି ନାହିଁ ।’

କବିତା ରୁମାଲ ଫିଟେଇ ଲୁହ ପୋଛିଦେଲା । ସମବେଦନାରେ ସମବୟସୀ ତରୁଣୀ ପେଟରୁ କୋହ ଉଠିଲା । ସେ ତାର ଧଳା ଟେରେଲିନ୍ ସାଢ଼ୀର ମଙ୍ଗରେ ବାଷ୍ପ ହୋଉ ହୋଉ କହିଲା, ‘ଭଗବାନ ପାରେଇ ଦେବେ ଉମା ! ସେ ଭାରି ଦୟାଳୁ । ଦି ବରଷ ତଳେ ଯେତେବେଳେ ବିଷପାନ କରି ଆତ୍ମହତ୍ୟା କରିବା ଛଡ଼ା ଆଉ ଅନ୍ୟ ରାହା ଦେଖୁ ନଥିଲି, ଘଟନାକ୍ରମେ ଦିନ ରାତି, ପ୍ରତିମୁହୂର୍ତ୍ତ ଦୁର୍ବହ ଜଣା ପଡୁଥିଲା, ସେତିକବେଳେ ପ୍ରଭୁଙ୍କର ଆଶୀର୍ବାଦ ବିନା କଣ ବଞ୍ଚି ରହିବାର ବାଟ ଥିଲା ? ମଣିଷ ଜୀବନ, ବିଶେଷ କରି ମାଇକିନା ଜନମଟାହିଁ ଏଇୟା ଉମା ! ତୁମେ ବ୍ୟସ୍ତ ହୁଅନା । ପ୍ରଭୁଙ୍କ ଉପରେ ଭରସା ରଖ ।’

କହୁ କହୁ କବିତା ଉମାର ହାତ ଦୁଇଟାକୁ ଭିଡ଼ିଆଣି ଗୁଣ୍ଡିରେ ଜାକିଲା । ଉମାର ଆନ୍ଦୋଳିତ, ବ୍ୟଥିତ ମନରେ ଏକ ଦମ୍ଭର ତରଙ୍ଗ ଖେଳିଗଲା । ସେ କବିତା କଣ କହିଲା, ସମ୍ପୂର୍ଣ୍ଣ ବୁଝିପାରିଲା ନାହିଁ କି ଆଉ କିଛି ପଚାରିଲା ନାହିଁ । ଭଗବାନଙ୍କ ନାମ ହିଁ ତା ମନରେ ବିଦ୍ୟୁତ୍ ଭଳି ଶକ୍ତି ସଞ୍ଚାର କରିଦେଲା ।

କ୍ରମେ କ୍ରମେ ଶିବରାତ୍ରୀ-ଉତ୍ସବ ବେଶ୍ ଜମି ଆସିଲା । ଦେବାଳୟ ଭିତର ଓ ବାହାର ଲୋକାରଣ୍ୟ ହୋଇଗଲା । ପବିତ୍ର ଉପାସନା-ବେଶରେ ଚମ୍ପା ଗଛର ଲଙ୍ଗଳା ଗୁଳିତଳେ ଦୁଇଟି ତରୁଣୀଙ୍କୁ ଏକତ୍ର ଦେଖି, ବିବାହିତ ଅବିବାହିତ ଅନେକ ଯୁବକ, ଅ-ଯୁବକ ମିନିଟ୍ ମିନିଟ୍ ଧରି ଆଖି ଫେରାଇ ନେଇ ପାରିଲେ ନାହିଁ । ହାଣ୍ଡିଶାଳର ଆମିଷ ବାସ୍ନାରେ ଏ ପାଖ ସେ ପାଖ ହେଉଥିବା ବିରାଡ଼ି କୁକୁରଙ୍କ ପରି ପାଖ ଚଡ଼ା ହେବାକୁ ଲାଗିଲେ ।

ଏହି ଦରଅଭ୍ୟସ୍ତ କ୍ଷତ ବିକ୍ଷତ ସାମାଜିକ ଦୁଃସ୍ଥିତି ହାବୁଡ଼ରେ ପଡ଼ି ଉମା ଓ କବିତା ତାଙ୍କର ଅବଚେତନ ମନରେ ସାମାନ୍ୟ ଆତ୍ମପ୍ରସାଦ ଅନୁଭବ କରୁଥିଲେ ମଧ୍ୟ ସେଠି ଆଉ ଅଧିକ କାଳ ରହି ପାରିଲେ ନାହିଁ । ସେମାନେ ନୀରବରେ ରିକ୍ସାରେ ବସି ଦେବାଳୟରୁ ବିଦାୟ ନେଲେ । ଟିକିଏ ଦୂର ଗଲାପରେ କବିତା ରିକ୍ସାର ଉପର ଢାଙ୍କୁଣୀଟା ଖୋଲି ଦେବାକୁ କହିଲା । ଉମା ମୁହଁ ବୁଲେଇ ଦଳବାନ୍ଧି ଯା ଆସ କରୁଥିବା ଯାତ୍ରୀମାନଙ୍କର ମୁହଁ, ଚପଲ, ସାଢ଼ୀ ବ୍ଲାଉଜଗୁଡ଼ିକର ରଙ୍ଗ, ଢଙ୍ଗ ନିରୀକ୍ଷଣ କରିବାରେ ଲାଗିଲା ।

‘ତମେ କାହିଁକି ବିଷଖାଇ ଆତ୍ମହତ୍ୟା କରିଥାନ୍ତ ନାନି ?’

କିଛିକ୍ଷଣ ପରେ ହଠାତ୍ ଉମା କବିତାର ମୁହଁକୁ ଅନେଇ ବିସ୍ମୟ କଣ୍ଠରେ ପଚାରିଲା । ପାଞ୍ଚ ସାତ ମିନିଟ ପର୍ଯ୍ୟନ୍ତ କବିତା ଉତ୍ତର ଦେଲାନାହିଁ । ବୋଧହୁଏ ସବୁ କଥା ଉମାକୁ ଖୋଲି କହିବ କି ନାହିଁ, ଭାବୁଥିଲା ।

ଦି ବର୍ଷ ଚାରି ମାସ ତଳେ ଅଧ୍ୟାପକ ହରମୋହନ ଗଡ଼ନାୟକ ଯେତେବେଳେ କଟକ ରେଭେନ୍ସା କଲେଜରୁ ବଦଳି ହୋଇ ଜୟପୁର ଆସିଲେ, ସେତେବେଳେ କବିତା ସହିତ ତାଙ୍କର ବାହାଘର ହୋଇ ଆଠ ମାସ ଏଗାର ଦିନ ହୋଇଥିଲା । କୋରାପୁଟ ଜିଲ୍ଲାର ଜୟପୁର ନାଁ ଶୁଣି ବାପା ମାଆ ଡରି ଯାଇଥିଲେ । ନାକରେ କାନ୍ଦି କାନ୍ଦି ମାଆ କହିଥିଲେ, ଚାକିରି ପ୍ରତି ଯଦି ତୋର ଏତେ ମମତା, ତୁ ଯାଇ ଦେଖ ସେଇଟା ଗାଁ ନା ବଣ! କିନ୍ତୁ କହିଦେଉଛି, ମୋ ବୋହୂକୁ ମୁଁ କଦାପି



Digitized by srujanika@gmail.com

ଛାଡ଼ିବ ନାହିଁ । କାଲି ସକାଳେ ତାକୁ ପର କୋଳରୁ ତୋଳି ଆଣି ଆଜି ଅଜଣା ରାଇଜର ଅପନ୍ତରାକୁ ପଠେଇ ଦେଇ ପାରିବନି ।

ଗଡ଼ନାୟକ ମୁହଁ ଉପରେ ସିନା କିଛି କହିପାରି ନଥିଲେ, କିନ୍ତୁ ଜୟପୁର ଆସୁ ଆସୁ ବସାଘର ଖୋଜାରେ ମନ ଲଗାଇ ଦେଲେ । ହେଲେ ଚାରି ମାସ ଯାଏ ମନମୁତାବକ ଘର ଖଣ୍ଡିଏ ମିଳି ପାରିଲା ନାହିଁ । ଶେଷରେ ଉମାର ବାପା ସ୍ୱପ୍ନରାଜଙ୍କ ସହିତ ଗୋଟିଏ ସାହିତ୍ୟ ସଭାରେ ତାଙ୍କର ବନ୍ଧୁତା ହେଲା । ସ୍ୱପ୍ନରାଜ ବାବୁ ଆପଣା ପ୍ରତିପତ୍ତି ବଳରେ ତାଙ୍କ ପଡ଼ଶାର ଜଣେ ମୁନିସିପାଲିଟି କାଉଁସିଲରଙ୍କ ଗୋଟିଏ ସାଉଡ଼ି 'ଉପଗୃହ'କୁ ମାତ୍ର ଛପ୍ପନଟି ଟଙ୍କା ଭଡ଼ାରେ କରେଇ ଦେଲେ । ତାର ଦି ମାସ ପରେ ପୂଜା ଛୁଟିରେ ଗଡ଼ନାୟକେ କଟକ ଯାଇ ମାଆଙ୍କୁ କହିଲେ, 'ବୋଉ, ଜୟପୁର ସହରଟାଏ ନୁହେଁ ଲୋ, ସ୍ୱର୍ଗର ଚେନାଏ । ସତ୍ୟ ଯୁଗରେ ଶେଷଥର ପାଇଁ ଯେତେବେଳେ ଦେବାସୁର ଯୁଦ୍ଧ ହେଲା, ସେତିକିବେଳେ ମହାପରାକ୍ରମୀ ଅସୁରମାନଙ୍କ ପାଦ ଘାତରେ ସ୍ୱର୍ଗର ଗୋଟାଏ ଅଂଶ ଭୁଷୁଡ଼ି ପଡ଼ିଲା, ବିଶାଖପାଟଣା ପାଖ ସମୁଦ୍ର କୂଳର ଟିକିଏ ଦୂରରେ । ସେଇଟା ହେଉଛି ଜୟପୁର ସହର । ସତ କହୁଛି, ଏଇଥର ମୋ ସହିତ ତୁ ତୋ ବୋହୂକୁ ପଠା, କେମିତି ସେ ଦେବୀମାନଙ୍କ ପରି ପ୍ରତିଭା ନେଇ ଫେରିବ, ଦେଖିବୁ !'

ସମସ୍ତେ ହସିଥିଲେ । ଯାହାହେଉ ଛୁଟିପରେ ଗଡ଼ନାୟକେ କବିତାକୁ ସାଙ୍ଗରେ ଧରି ଆସିଲେ । ସେହି ଦିନୁ ସେମାନେ ଉମା ଘର ପଡ଼ୋଶି ହୋଇ ରହିଛନ୍ତି । ଦିନକୁ ଦିନ ଉମା ସହିତ କବିତାର ବନ୍ଧୁତା ନିବିଡ଼ରୁ ନିବିଡ଼ତର ହେଉଛି । ଏପରିକି ଦିନକ ପାଇଁ ବି ପରସ୍ପର ଦେଖା ସାକ୍ଷାତ ନ ହେଲେ ଉଭୟେ ବ୍ୟସ୍ତ ହୋଇ ପଡ଼ନ୍ତି । ଭିନ୍ନ ଭିନ୍ନ ଦୁଇଟା ଘରେ ଅଲଗା ଅଲଗା ହୋଇ ରହନ୍ତି ସତ କିନ୍ତୁ ଆଚରଣରେ ଦିହେଁ ଦି ଭଉଣୀ ଭଳି ଚଳୁଥାନ୍ତି ! ଅନେକ ସମୟରେ ଏମାନଙ୍କ ଏ ପ୍ରକାର ମଧୁର ନିବିଡ଼ ବନ୍ଧୁତା ଦେଖି କେହି କେହି ସାଙ୍ଗ ସାଥି ହିଂସାରେ, ଈର୍ଷାରେ ଜଳିପୋଡ଼ି ଯାଆନ୍ତି । କୁତ୍ସାରଟନା କରନ୍ତି । ଲଗା ଯୋଡ଼ା କରି ବାର କଥା କହି ଚିଆଟେଇ କରନ୍ତି । କିନ୍ତୁ ଏ ଦିହେଁ କେବେହେଲେ କିଏ କାହାପ୍ରତି ମନରେ ସନ୍ଦେହ ପୋଷଣ କରି ନାହାନ୍ତି । କଥାବାର୍ତ୍ତାରେ ବି କେବେ ଟିକିଏ ହେଲେ ଅମେଳ ହୋଇନାହିଁ ।

କବିତା ଏମ୍. ଏ. ପାଶ୍ କଲାପରେ ବିନା କେତେ ଓଡ଼ିଶୀ ନୃତ୍ୟକଳା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଟ୍ରେନିଂ ପାଇଥିଲା । ତା ପରେ ପରେ କଣ ସବୁ ଗଣ୍ଡଗୋଳ ହେଲା, ସେ ନୃତ୍ୟକଳା ବିଦ୍ୟାଳୟକୁ ଗଲାନାହିଁ । ଘଟନାକ୍ରମେ ଅଧ୍ୟାପକ ଗଡ଼ନାୟକ ସହିତ ତାର ବିବାହ ହୋଇଗଲା । ସେତିକବେଳେ ଅନେକ ସନ୍ଦେହ କରିଥିଲେ ଯେ, କବିତା ଭଳି ଏଡ଼େ ସୁନ୍ଦରୀ, ଉଚ୍ଚ ଶିକ୍ଷିତା ଝିଅ, ଗଡ଼ନାୟକ ଭଳି ଗୋଟାଏ ଗ୍ଲେଟା ଅଧ୍ୟାପକଟାକୁ କେମିତି ବାହା ହେଲା ?

ଗଡ଼ନାୟକେ ଅସୁନ୍ଦର, ଅଗୁଣର ନୁହନ୍ତି । ଦୁର୍ଘଟଣାରେ ପଡ଼ି ନଳଗଣ୍ଠି ପାଖ ହାଡ଼ ଭାଙ୍ଗି ଯାଇଥିଲା, ଦେଶ ମିଶ୍ରଣ ଆନ୍ଦୋଳନବେଳେ । ଦେଶ କାମ କରୁ କରୁ ଗ୍ଲେଟା ହୋଇଯାଇ ଥିବାରୁ କେବେହେଲେ ସେ ସେଥିପାଇଁ ଦୁଃଖ କରନ୍ତି ନାହିଁ । ବରଂ କେହି ସମବେଦନା ପ୍ରକାଶ କଲେ ଉତ୍ତରରେ କହନ୍ତି, ଦେଶପାଇଁ, ଜାତିପାଇଁ ଏ ଜୀବନଟା ଯଦି ଚାଲିଯାଏ, ମୁଁ ବେଶ ଆନନ୍ଦିତ ହେବି ।

କବିତା ମଧ୍ୟ କଥାଟାକୁ ଠିକ୍ ଏହି ଭାବରେ ବିଚାର କରେ । ସେ ମନେକରେ, ଏହାତ ତାର ଗୌରବ ।

କବିତାକୁ କେବେ କେମିତି ଥରେ ଅଧେ ଦେଖିଲା ଲୋକେ ଯେତେ ସୁନ୍ଦରୀ ବୋଲି କହନ୍ତି, ପ୍ରକୃତରେ ସେ ସେତେ ସୁନ୍ଦରୀ ନୁହେଁ । ତେବେ ଗଡ଼ନାୟକଙ୍କ ଭାଷାରେ ଚଳନ୍ତିସୟ ! ବୟସ ପଚିଶିରୁ ଟିକିଏ ବେଶି ହୋଇପାରେ । ଗଡ଼ନାୟକଙ୍କ ବୟସରୁ ପାଞ୍ଚ, ଛ ବର୍ଷର ସାନ । ଉମାଠୁଁ ତିନି, ଚାରି ବର୍ଷର .କ ପାଖାପାଖି ପାଞ୍ଚ ବର୍ଷର ବଡ଼ ହୋଇପାରେ । କିନ୍ତୁ ଦିହେଁ ଏକା ବୟସର ଅଭିଆଡ଼ୀ ଝିଅଙ୍କ ପରି ଦେଖା ଯାଆନ୍ତି ।

ଉମା ଏକାଦଶ ଶ୍ରେଣୀରେ ପଢୁଥିଲାବେଳେ ବାପ ମାଆ ମନା କରିବାରୁ ପାଠ ଛାଡିଦେଲା । ଏ ପର୍ଯ୍ୟନ୍ତ ତା ଜୀବନରେ ଯେତେ ଯାହା ଘଟନା ଘଟିଛି, ଏହାହିଁ ହେଉଛି ସବୁଠାରୁ ମର୍ମନ୍ତୁଦ ଘଟନା । ସେଇଦିନୁ ସଂସାର ପ୍ରତି, ଜୀବନ ପ୍ରତି ତାର ସବୁଗର ଧ୍ୟାନ ଛାଣ୍ଡି ଯାଇଛି । ବିତୃଷ୍ଣା ଜନ୍ମିଛି । ଦେଖିବାକୁ ସୁନ୍ଦରୀ, ବ୍ୟବହାରରେ ଚତୁରୀ ବୋଲି ଅନେକ ସମବୟସୀ ସାଙ୍ଗ ସର୍ବଦା ହିଂସା କରିଥାନ୍ତି, ମିଥ୍ୟା ପ୍ରଚାର କରି ତାର ଚରିତ୍ରକୁ ବିପଦାପନ୍ନ କରାଇଥାନ୍ତି ମଧ୍ୟ ।

'କଣ ଏତେ ଭାବୁଛି ? ମୋତେ କହିବ ନାହିଁ ? ହଉ, ନ କୁହ । ଯଦି ଭୟ ହେଉଛି, କୁହନାହିଁ । ମୁଁ ବା ଜାଣିବାର ପ୍ରୟୋଜନ କଣ ?'

ଉମା ପୁଣି ପ୍ରସଙ୍ଗଟାକୁ ବାଗେଇ ବୁଗେଇ ଆରେଇ ନେବାକୁ ଚେଷ୍ଟାକଲା । ଏତିକ ବେଳକୁ ରଜ୍‌ସାହି ସାହି ମୁଣ୍ଡକୁ ଆସି ମାଡ଼ ଆସୁଥିବା ଜପ୍ ଦୁଇଟାକୁ ବାଟ ଦେଉ ଦେଉ ଠିଆହୋଇ ପଡ଼ିଥିଲା । କବିତା କହିଲା, ଉମା ! ଯଦି ମୋ ଜୀବନର କୌଣସି ଗୋପନ କଥା କାହାକୁ କହିବାର ଥାଏ, ତମକୁ ନ କହି ଯିବ କୁଆଡ଼େ ? ... ବିଶ୍ୱାସ କର ଉମା, ମୁଁ ତୁମକୁ କଦାପି ମାତ୍ର ସନ୍ଦେହ ବା ଅବିଶ୍ୱାସ କରୁନାହିଁ । ଜୀବନର ଅନେକ ଅଲୋଡ଼ା କଥା କୁହାକୁହି ହୋଇ ସାରିଛି । ଉଭୟେ ଉଭୟଙ୍କ ନିକଟରେ ଏ ସାମାଜିକ ଜୀବନକୁ ବନ୍ଧା ପକାଇ ଦେଇଛେ । ଆଉ ବା ଯାହା ଅବଶିଷ୍ଟ ରହି ଯାଇଛି, ତମକୁ ନିଶ୍ଚୟ କହିବ ।

ଘରେ ପମ୍ମୁ ପମ୍ମୁ ବୋଉ ପାଟିକଲେ, କରମ ଦୋଷରୁ ତ ଝିଅ ଜନମ ପାଇଥାଳି, ସେଥିରେ ଏତେ ଉଦାସିଆ ହେଲେ ଚଳିବ ? ସକାଳ ପହରୁ ଗଲୁ ଯେ ଗଲୁ, କୁଆଡ଼େ ଗଲୁ ପତ୍ତା ନାହିଁ । ଦେଉଳକୁ ତ ତୋର ଯିବାର କଥା ! ଦେଉଳଟା କଣ ମାସେକର ବାଟ କି ? ଜାଣି ବୁଝି ଆଉ ହେବା ଦରକାର ।

ଉମା କିଛି ନ କହି ବୋଉ ପାଖରେ ପୂଜା ଭୋଗ, ଫୁଲ ବେଲପତ୍ରୀ ଥୋଇଦେଇ ତା ଶୋଇବା ଘରକୁ ଦୋ ମହଲା ଉପରକୁ ଗୁଲିଗଲା । ସେ ବୁଝି ପାରିଲା ନାହିଁ, ବୋଉ କାହିଁକି ଏମିତି କହୁଛି ? ଭାବିଲା, କହିବାର ଅଧିକାର ଅଛି ବୋଲି କହୁଥିବ ପରା ! ନ ହେଲେ ଯାହାକୁ ସେ ଦଶ ମାସ ପେଟରେ ଧରିଥିଲା, ତାକୁ ଆଜି ଭଲରୂପେ ବୁଝିପାରୁ ନ ଥାନ୍ତା ?

ପବିତ୍ର ଉପାସନା ଦିନଟା ବି ଭଲରେ ... ଟିଲା ନାହିଁ । ଠେଙ୍କିରେ ଛେଚିହୋଇ ଦି ତିନିଟା ଆଙ୍ଗୁଠି ହାଡ଼ ଫାଟି ଯାଇଥିବା ହାତ ଭଳି ଉମାର ମନ ଠକ୍ ଠକ୍ ହେଲା । ମଞ୍ଜୁମାଳା ଦେଉଳ ବେଢ଼ାରେ, ଏତେ ଲୋକଙ୍କ ସାମ୍ନାରେ ବକିଦେଇ ଯାଇଥିବା କଟୁ କଥାଗୁଡ଼ାକ ତ ପେଟ ଭିତରେ ଉକୁଟୁ ବୁକୁରୁ ହେଉଥିଲା । ତାର ପ୍ରାଣପ୍ରିୟ ସ୍ନେହମୟୀ ବୋଉ ମୁହଁରୁ ଏବେ ଆଉ ଦି ପଦ ଶୁଣିଲାଠୁଁ କ୍ରମେ କ୍ରମେ ତା ଶିରା ପ୍ରଶିରା ଭିତରେ ରକ୍ତ ଧାରମାନ ଅପମାନ-ନିଆଁରେ ଫୁଟା ପାଣି ପରି ଟକର ମକର ହେବାକୁ ଲାଗିଲା । ଦେହ, ମୁଣ୍ଡ ତାତିଗଲା ପରି ମନେହେଲା ।

'ଏଇ ହତାଶିଆ ସ୍ୱଭାବ ଯୋଗୁଁ ସର୍ବଶ୍ରେଷ୍ଠ ପ୍ରାଣୀ ମଣିଷର ଭଲଗତି ସହଜ ହୁଏନାହିଁ।' ଉମା ଶିବ ପୁରାଣ ପ୍ରଥମ ଖଣ୍ଡ ଆଲମାରିରୁ ବାହାର କରି ଝାଡୁ ଝାଡୁ ମନେ ମନେ ଭାବିଲା । 'ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି । ଯେମିତି ହେଉ ବଞ୍ଚି ରହିବାକୁ ହେବ।' ମନଟାକୁ ବାଁରେଇ ନେବାପାଇଁ ସେଇଠି ସେ ଖଟ ଉପରେ ବସି ଶିବ ପୁରାଣ ପଢ଼ିବାରେ ମନ ନିବେଶ କଲା ।

'କଣ ସେଠି କରୁଛୁ ? ଲୁଗା ବଦଳେଇ ଟିକିଏ ଚଞ୍ଚଳ ତଳକୁ ଆସିଲେ ହେବନି !' ଉପର ମହଲାକୁ ନଯାଇ ଅଗଣାରେ ଠିଆହୋଇ ଉମାର ବୋଉ ପାଟି କଲେ ।

ଉମା ବହି ପଢ଼ା ବନ୍ଦ କରି ଆଲମାରିରେ ତାଲା ପକାଉ ପକାଉ ଭାବିଲା, ମଞ୍ଜୁମାଳାର କି ଅନିଷ୍ଟ ସେ କରିଥିଲା ? କାହିଁକି ସେ ଉପରେ ପଡ଼ି ଧକ୍କା ଦେଲା, ଏତେ କଥା କହିଲା ? ତାର କି ଦରକାର ଥିଲା ? ଯେଉଁମାନେ ଏମିତି ତୁଚ୍ଛାକୁ କଜିଆ କରି ଭଲ ଲୋକଙ୍କୁ ଖରାପ ହେବାପାଇଁ ବାଧ୍ୟ କରନ୍ତି, ସେମାନଙ୍କୁ କଣ ଭଗବାନ ଶାସ୍ତି ଦିଅନ୍ତି ନାହିଁ ? ଯଦି ଦିଅନ୍ତି କେତେ ଡେରିରେ ଦିଅନ୍ତି ?

ଉପର ଘରୁ ତଳକୁ ଓହ୍ଲାଇ ଆସୁ ଆସୁ ଉମା ପୁଣି ଭାବିଲା, ନା ପରକଥା ଭାବି କିଛି ଲାଭନାହିଁ । ନିଜକୁ, ନିଜ ବିଚାରକୁ, ଆପଣା କରଣୀକୁ ଆପେ ଜଗିଲେ ହେଲା । ଯା ଏଥର ସିଏ ଯାହାକରୁ କି କହୁ, କାହାକୁ କିଛି ନ କହିଲେ ଗଲା ।

ତଳ ଘରେ ପାଦ ଦେବାକୁ ଆଉ ମାତ୍ର ଚାରି, ପାଞ୍ଚଟା ପାଉଛ ବାକି, ଉମା ଅଟକି ଗଲା । ତାର ମନେହେଲା, ତଳ ଘରେ ଅକସ୍ମାତ ଗୁଡ଼ାଏ ଭଦ୍ର ଲୋକଙ୍କର ଭିଡ଼ ଲାଗିଛି । ସେ ସିଡ଼ି ଉପରେ ଥାଇ ଝରକା ଦେଇ ନିରେଖି ଦେଖିଲା । ସତେତ, ତାର ବାପା ବିଦ୍ୟାରାଜ ବାବୁ, ଏମ୍. ଏଲ୍. ଏ. ବିଭୂତି ଭୂଷଣ ଦଳପତି, ଜିଲ୍ଲା ପରିଷଦ ଚେୟାରମେନ୍ ଶ୍ରୀମାନ୍ ବିନାୟକ ଶର୍ମା ପ୍ରବଳ ଯୁକ୍ତିତର୍କ ଭିତରେ ମଗ୍ନ ହୋଇ ଯାଇଛନ୍ତି । ଉମା ଆଉ ପଦେମାତ୍ର ଅଗ୍ରସର ନ ହୋଇ ସେଇଠି ଠିଆହୋଇ କାନେଇଲା ।

ବିଭୂତି ଦଳପତି ଉତ୍ତେଜିତ କଣ୍ଠରେ କହିବାକୁ ଲାଗିଲେ, ବିଦ୍ୟାରାଜ ବାବୁ, ଶୁଣନ୍ତୁ । ଉମା କେବଳ ଆପଣଙ୍କର ଝିଅ ନୁହେଁ । ସେ ମୋର ଭଉଣୀତୁଲ୍ୟା । ସର୍ବଦା ଆମ୍ଭେମାନେ ତାର ମଙ୍ଗଳ କାମନା କରିବା ଆବଶ୍ୟକ । କିନ୍ତୁ ଦେଶ ଓ

ଜାତିର କାର୍ଯ୍ୟବେଳେ ଆମ୍ଭମାନଙ୍କୁ ପାରିବାରିକ, ସାମାଜିକ ସଂକୀର୍ଣ୍ଣତା ଅତିକ୍ରମ କରି ଯିବାକୁ ପଡ଼ିବ । ତା ନହେଲେ ବ୍ୟାପକ ଜାତୀୟ ମଙ୍ଗଳ ସାଧିତ ହେବନାହିଁ ।

କଞ୍ଚା ଶାଳ ପତ୍ରରେ ମୋଡ଼ା ହୋଇଥିବା ପାନ ଖିଲଟିକୁ ଖୋଲି ପାଟିରେ ଗୁଞ୍ଜି ଦେଇ ବିନାୟକ ଶର୍ମା କହିଲେ, 'ଆପଣଙ୍କ ଭଳି ଦେଶର ଜଣେ ଦାୟିତ୍ୱସମ୍ପନ୍ନ ବ୍ୟକ୍ତି ଯଦି ଏପରି କହିବେ, ତା ହେଲେ ଏ ବିରାଟ ଦେଶକୁ, ଜାତିକୁ ରକ୍ଷା କରିବା ପାଇଁ ଆମ୍ଭେମାନେ କଣ ପାରିବୁ ? ଭାବନ୍ତୁ । ଉମା ଭଳି ବୁଦ୍ଧିମତୀ, ସୁଯୋଗ୍ୟା ଝିଅକୁ ଆପଣ ଯଦି ଦେଶର ଏପରି ଏକ ଜାତୀୟ ବିପତ୍ତିବେଳେ, ଘର କୋଣରେ ଲୁଚେଇ ରଖିବେ, ଏ ଜାତିର ପ୍ରତିରକ୍ଷା ସମ୍ଭବ ହେବ କିପରି ? ଚୀନ ମାଡ଼ି ଆସିଲେ ଆପଣମାନେ ସାରା ଜୀବନ ପରିଶ୍ରମ କରି ରକ୍ତଦେଇ ଗଢ଼ିଥିବା ଦେଶ ଧ୍ୱଂସ ହୋଇଯିବ ପଛକେ ଆଉ କଣ କରିଯିବ ?'

ଶର୍ମାଙ୍କର ପଦ୍ମପତ୍ର ପରି ଚକା ମୁହଁଟି ଅଭିମାନରେ ଲାଲ୍ ହୋଇଗଲା ।

ଉମାର ଦେହ ଶୀତେଇ ଉଠିଲା । ଧନେ ନାହିଁ, କାଳେ ନାହିଁ, ଗନ୍ଧା ପୁନେଇଁ କି ମାଇଁ । ଆଜି ଏ ବଡ଼ ବଡ଼ ଲୋକମାନେ ତା କଥା ପକେଇ ଏତେ ଝଣାଝଣି ହେଉଛନ୍ତି କାହିଁକି ? ଉମାର ମନ ତଳେ ଏହି ପ୍ରଶ୍ନର ବେଗ ତାର ସାରା ଶରୀରରେ କେମିତି ଏକ ଆତ୍ମଗୌରବର ଶିହରଣ ଖେଳାଇ ଦେଲା ।

ବିଦ୍ୟାଧର ବାବୁ ମନ ମାରି କହିଲେ, ରାମ ରାମ ! ସେମିତି କଥା କାହିଁକି କହୁଛନ୍ତି ଆଜ୍ଞା । ଉମା ଜଣେ ବା କଣ କରି ପକେଇବ ? କାଲିର ପିଲାଟା । ଭଲ ମନ୍ଦ ଜାଣିନାହିଁ । ଅଜାଣିମା ମାଇକିନା ଝିଅ । ତା ହାତରେ ହେବ ବା କଣ ?

ଖଣ୍ଡିଆ ସିଗ୍ରେଟ୍‌ଟା ଫୋପାଡ଼ି ଦେଇ ଥରେ ଦି ଥର ଛେପ ଢୋକି ଢୋକି ବିଭୁ ବାବୁ କହିଲେ, ଶୁଣନ୍ତୁ ବିଦ୍ୟାଧର ବାବୁ, ଭାରତର ଅଜେୟ ଶକ୍ତି ହେଉଛି, ନାରୀଜାତି । ଦେଶର କୋଣେ କୋଣେ ତାଙ୍କୁ ଆଜି ଜାଗ୍ରତ ନ କଲେ, ଯିଏ ଯେଉଁଠି ଅଛନ୍ତି, ସେଇଠି ସେମାନଙ୍କୁ ସଚେତନ ଓ ସକ୍ରିୟ ନ କରେଇଲେ ଆମେ ଆଦୌ ଶତ୍ରୁର ସମ୍ମୁଖୀନ ହୋଇ ପାରିବା ନାହିଁ । ଆପଣ ଭାବି ଦେଖନ୍ତୁ । ଏବେ ପୃଥିବୀର ବିଭିନ୍ନ କ୍ଷେତ୍ରରେ ଦେଖା ଦେଉଥିବା ଦୁଷ୍ଟ ଶକ୍ତିମାନଙ୍କ ଉତ୍ପାତମୂଳକ ଆକ୍ରମଣରୁ ମଣିଷ ସମାଜକୁ ବଞ୍ଚେଇବାକୁ ହେଲେ, ଭାରତର ସୁପ୍ରତିଷ୍ଠିତ ମାତୃଶକ୍ତିକୁ ଜାଗ୍ରତ କରିବାକୁ ହେବ । ତା ଛଡ଼ା ଅନ୍ୟ ଉପାୟ ନାହିଁ ନାହିଁ ନାହିଁ । ଆଉ ଏ କାମ କେବଳ ଉମା ଭଳି ଶକ୍ତିମୟୀ ଝିଅମାନଙ୍କ ଦ୍ୱାରାହିଁ ସମ୍ଭବ ।

ବସନ୍ତରାଜ ବାବୁଙ୍କର ମୁହଁଟା କେମିତି ଟିକିଏ ମଳିନ ଦେଖାଗଲା । ସେ ନରମ କଣ୍ଠରେ କହିଲେ, ଆପଣମାନେ ଯଦି ଏପରି ଜିଦ୍ ଧରି ବସିବେ, ମୁଁ ଆଉ ଆପତ୍ତି କରିବି ନାହିଁ । କିନ୍ତୁ ଉମା ସଭା ସମିତିକୁ ଯାଇ କଣ କରିବ ମୁଁ ଭାବିପାରୁ ନାହିଁ । ପୁରୁଷ ଲୋକଙ୍କ ସହିତ ମିଶିବାକୁ ସେ ବଡ଼ ଲଜ୍ୟାବୋଧ କରେ । ତା ଛଡ଼ା ତାର ଭବିଷ୍ୟତ ଅନ୍ୟ ପ୍ରକାର ହେବାର ଥିଲା, ଯେଉଁଥିପାଇଁ କି ତାର ଅନିଚ୍ଛାସତ୍ତ୍ୱେ ପାଠ ପଢ଼ା ଛଡ଼େଇବାକୁ ପଡ଼ିଲା ।

ଏଥର ହସ ହସ ମୁହଁରେ ବଙ୍କୁ ବାବୁ ଆରମ୍ଭ କଲେ, ତାହାର ଭବିଷ୍ୟତ କେହି ଗଢ଼ି ପାରିବେ ନାହିଁ ବସନ୍ତରାଜ ବାବୁ ! ଯାହା ଯେମିତି ହେବା କଥା, ସେମିତି ହେବ ହିଁ ହେବ । ଉମାକୁ ଟିକିଏ ଡାକନ୍ତୁ ତ ! ସେ ନିଜେ କହୁ, ତାର ଇଚ୍ଛା କଣ ?

'ମୁଁ ଏଇଠି ଅଛି ବାପା !' ହଠାତ୍ ଉମା ସେମାନଙ୍କ ସାମ୍ନାକୁ ଚାଲିଆସି ସମସ୍ତଙ୍କୁ ପ୍ରଣାମ କଲା । ବସନ୍ତରାଜ ବାବୁ କଳ୍ପନା କରି ନଥିଲେ ଯେ, ତାଙ୍କର ଝିଅ ଉମା ଏପରି ନିସଂକୋଚ ଭାବରେ ଭଦ୍ରବ୍ୟକ୍ତିମାନଙ୍କ ସାମ୍ନାକୁ ଚାଲିଆସି କଥା କହିପାରେ ! ସେ ଏକ ପ୍ରକାର ଅବାକ୍ ହୋଇ ଉମାର ମୁହଁକୁ ଚାହିଁ ରହିଲେ ।

ଉମା ଗର୍ଜନ ମୁଖର ବର୍ଷା ମେଘ ପରି ସ୍ଥିର ଗମ୍ଭୀର ହୋଇ ଠିଆହୋଇ ରହିଲା । ଦି ନେତା ଆଗ୍ରହ, ଆଶଙ୍କା ଓ ଉତ୍କଣ୍ଠା ମଧ୍ୟରେ ଉମାର ଖୋଲା ପାଦ, ତା ଉପରକୁ ମାଲି ଯାଇଥିବା ପୌରାଣିକ ରଣକ୍ଷେତ୍ରର ଚିତ୍ରମଣ୍ଡିତ ସାଢ଼ୀର ଚଉଡ଼ା ଧଡ଼ିକୁ ଅନେଇ ରହିଲେ । ଏହି ଅନାକାଂକ୍ଷିତ ନୀରବତା ଭିତରେ ଉମାର ମନେ ପଡ଼ିଗଲା, ଗୋଟାଏ ରାଜନୈତିକ ଉପନ୍ୟାସର କାହାଣୀ ! ଦେଉଳରୁ ଫେରିବା ବେଳୁ ଘୃଣା ଓ ଅପମାନରେ ମନଟାତ ରଗ ରଗ ହେଉଥିଲା, ଏମାନଙ୍କୁ ଦେଖି ତାର ଇଚ୍ଛାହେଲା, ଏ ନେତାମାନଙ୍କୁ ଏବେ ସେ ସିଧା ସଳଖ ପଚାରି ଦେବ— ଦେଶ ଜାତି ଶାସନ ସମାଜ ପ୍ରଭୃତି ବଡ଼ ବଡ଼ କଥା ନେଇ ଯେଉଁ ବଡ଼ ଲୋକମାନେ ସର୍ବଦା ବ୍ୟସ୍ତ, ସେମାନେ ତା ଭଳି ଗୋଟାଏ ସରଳା, ନିରୀହା, ଅସମର୍ଥା, ଅଜାଣିମା ଝିଅ କଥା ଏତେ ଜୋରରେ ପକେଇଛନ୍ତି କାହିଁକି ? ଉପନ୍ୟାସର ଘଟନା ପରି ହିନ୍ଦୁ ଘରର ଆଉ ଗୋଟାଏ ଅବିବାହିତା ଯୁବତୀ ଝିଅକୁ ଘରୁ ଦାଣ୍ଡକୁ ନେଇ, ତାର ରୂପ ଯୌବନକୁ ନେତାମାନଙ୍କର ପାପ ପଙ୍କିଳ ଅସାର ଇଚ୍ଛାର ଶୀକାର କରିବା ଲାଗି ଆୟୋଜନ ହେଉଛି କି ? କାହିଁକି ? ଆଉ କେହି ମିଳିଲେ ନାହିଁ ବୋଲି ? ଯେଉଁ କେତେକ ନିଆଁଗିଳା ରାଜନୈତିକ ନେତାମାନେ ମଣିଷ ଜୀବନକୁ ଅଲୋଡ଼ା କୁଟା ଖଣ୍ଡିଏ ଭଳି ମନଇଚ୍ଛା ଆଡ଼େଇ ଦେଇ ପାରନ୍ତି,

ଆପଣାର ଅବଗୃହୀତ ଖିଆଲର ସ୍ରୋତରେ ଲକ୍ଷ ଲକ୍ଷ ଅସଂପୃକ୍ତ ନର ନାରୀଙ୍କ ବର୍ତ୍ତମାନକୁ ଭସେଇ ଦେଇ ପାରନ୍ତି, ଅନ୍ୟମାନଙ୍କ ଦୁଃଖକୁ ପୁନାନ୍ଧ କରି ତା ଉପରେ ଆପଣା ସ୍ୱପ୍ନର ସଉଧ ତୋଳନ୍ତି, ଅବାଞ୍ଛିତ ଆନନ୍ଦ, ଉଦ୍ଦେଶ୍ୟ ସାଧନ ଲାଗି କୁଟୁମ୍ବ ଓ ଜୀବନ ବିନମୟରେ ରାଜନୀତି କରି ପାରନ୍ତି, ସେମାନଙ୍କ ରାଜନୈତିକ କଳାପୂର୍ଣ୍ଣ ପରାମର୍ଶ ଜଣେ ସାଧୁ ଗୃହସ୍ଥ, ଜଣେ ସରଳା କୂଳକନ୍ୟା ନିକଟରେ ମୂଲ୍ୟହୀନ, ବିପଦ ସଂକୁଳ ନୁହେଁ କି ?

କିନ୍ତୁ ପାଟିଖୋଲି ଉମା କିଛି କହି ପାରିଲା ନାହିଁ । କେମିତି କହିବ ? ସେ ଯେତେବେଳେ ସପ୍ତମ ଶ୍ରେଣୀରେ ପଢୁଥିଲା, ବିଭୂତି ଦଳପତି ଥିଲେ ତାର ଗଣିତ ମାଷ୍ଟ୍ର । ବିନାୟକ ବାଳିକା ହାଇସ୍କୁଲ ପାଖରେ ଗୋଟାଏ ନାମଜାଦା ଜଳଖିଆ ହୋଟେଲ କରିଥିଲେ । ତେଣୁ ବିନ୍ଧୁ ଆଗରୁ ଏମାନଙ୍କର ସହିତ ତାର ସମ୍ପର୍କ ଭିନ୍ନ ପ୍ରକାର ଥିଲା । ଏମାନେ ଆଜି ବଡ଼ ଲୋକ, ତା ନିକଟରେ ଅଧିକ ଗୌରବଯୋଗ୍ୟ, ମାନ୍ୟ । ସେ କେବଳ ଚୁପ୍ ହୋଇ ଜିଜ୍ଞାସୁ ଚକ୍ଷୁରେ ତଳକୁ ଅନେଇ ଠିଆ ହୋଇ ରହିଲା ।

ବିଭୂ ବାବୁ ଉମାକୁ ପୁଣି ଆରମ୍ଭ କଲେ, 'ଆଜି ତୁମ ଉପରେ ବିରାଟ ଦାୟିତ୍ୱ ପଡ଼ୁଛି ଉମା । ମୋର ବିଶ୍ୱାସ, ଅକ୍ଲେଶରେ ତୁଲେଇ ଦେବ ।'

ଅଦିନରେ ଫଳ ବଗିଚା ଭିତରେ ପଶି ଏ ଗଛରୁ ସେ ଗଛକୁ ଡେଇଁ ବୁଲୁଥିବା ହନୁମାଙ୍କଡ଼ ହଠାତ୍ ନାଲି ଟହଟହ ପାଚିଲା ଫଳ ଝୁମ୍ପାଏ ଦେଖିଦେଲେ ଖୁସିରେ ଯେପରି ହସିଥାନ୍ତି, ବିନାୟକ ସେହିପରି ଓଠ ଦି ଫାଳକୁ ବୁଲେଇ ବଙ୍କେଇ ନଚେଇ ନଚେଇ କହିଲେ, ସେ ଦିନର ଭାଷଣରୁ ଦେଶପ୍ରତି ତମ ଆନ୍ତରିକତାର ପରିଚୟ ପାଇ ବିସ୍ମିତ ହେଲି । ମୋର ଧାରଣା ନଥିଲା ଯେ ଓଡ଼ିଶାରେ ତୁମ ପରି ଝିଅଟିଏ ଅଛି । ତମେ ନିଶ୍ଚୟ ପାରିବ !

ବାପାଙ୍କର ଶଙ୍କିତ, ଗମ୍ଭୀର ମୁଖମଣ୍ଡଳକୁ ସନ୍ତର୍ପଣରେ ନିରୀକ୍ଷଣ କରିସାରି ଉମା କ୍ଷୀଣ କଣ୍ଠରେ ପଚାରିଲା, କଣ କରିବ ?

'ବିଭୂ ବାବୁ କହିଲେ, ୧୯୬୨ ଅକ୍ଟୋବର କୋଡ଼ିଏ ତାରିଖରୁ ଭାରତ ସୀମାରେ ଚୀନ୍‌ର ଉତ୍ପାତ ବଢ଼ି ଯାଇଥିବା ତମେ ଜାଣିଚ । ସମଗ୍ର ଦେଶ ଓ ଜାତି ଯେତେବେଳେ ବିପଦାପନ୍ନ, ଜଣେ କେହି ଘରେ ବସି ରହିବା ଉଚିତ୍ ନୁହେଁ । ଭାରତର ପ୍ରତିରକ୍ଷା ଲାଗି ଦେଶ ତମାମ ନାନା ପ୍ରକାର ଉଦ୍ୟମ କରାଯାଉଛି ।

ତା ଭିତରେ ଗୋଟାଏ ବଡ଼ କାମ ହେଉଛି, ଏ ଦେଶର ସର୍ବୋତ୍ତମ ଶକ୍ତି ନାରୀ ଜାତିକୁ ଜାଗ୍ରତ କରିବା । ନାରୀ କର୍ମୀ, ସମାଜ ସେବିକା, ଗ୍ରାମ ସେବିକା, ଶିକ୍ଷୟିତ୍ରୀ, ଡାକ୍ତରାଣୀ ଯିଏ ଯେଉଁଠି ଅଛନ୍ତି, କାମ କରୁଛନ୍ତି । କିନ୍ତୁ ଜୟପୁର ସହରରେ ନାରୀଜାଗରଣ ଠିକ୍ ଭାବରେ ହେଉନାହିଁ । ଏ କାମ ଶୀଘ୍ର କରିବାକୁ ହେବ ।'

'ଭଲ କଥା ।'

ନିର୍ଲିପ୍ତ ଭାବରେ ଉମା ଉତ୍ତର ଦେଇସାରି ମନେ ମନେ ପଚାରିଲା, ଆଜି ଦିନ ଦି ପହରଟାରେ କଂଗ୍ରେସ ସମର୍ଥିତା ତଥାକଥିତ ସମାଜ ସେବିକା ମଞ୍ଜୁମାଳା ତା ଉପରେ ଅକାରଣରେ ଯେପରି ଚଢ଼ାଉ କଲା, ଏହିପରି ଲକ୍ଷେ ନାରୀଙ୍କ କୋଟିଏ ଜାଗରଣରେ ଦେଶର କି ଲାଭ ହେବ ?

'ଜୟପୁରରେ ପ୍ରତିରକ୍ଷା ଉଦ୍ୟମରେ ନାରୀ ଜାଗରଣ କାର୍ଯ୍ୟ ପରିଚାଳନା ଦାୟିତ୍ୱ ତୁମେ ନେବାକୁ ହେବ ।' ସ୍ନେହାକ୍ତ କଣ୍ଠରେ ବିନାୟକ କହିଲେ ।

'ମୁଁ କଣ କରି ପାରିବି ?'

'ଘରେ ଘରେ ପଶି ସମସ୍ତ ସ୍ତ୍ରୀ ଲୋକଙ୍କୁ ପ୍ରତିରକ୍ଷା କାର୍ଯ୍ୟରେ ଯଥାସମ୍ଭବ ସାହାଯ୍ୟ କରିବାକୁ ଉଦ୍‌ବୁଦ୍ଧ କରିବ ।'

'ଯେଉଁମାନେ କରୁଛନ୍ତି ତ କରୁଛନ୍ତି । ମୁଁ ଆଉ ଅଧିକା ଟା କଣ କରି ପାରିବି ? ଯାହା ତ କାମ ହେଉଛି, ଦେଖୁଛି ।'

ଏଥର ଉମା ସାମାନ୍ୟ ହସିଲା ।

ବିଭୂ ବାବୁ ସନ୍ଦେହୀ ଗୃହିଣୀ ଚାହାଣି ଦେଇ ପଚାରିଲେ, 'କଣ ଦେଖୁଛ ?'

'ଆପଣମାନେ ମୋର ମାନ୍ୟ । ସବୁ କଥା ମୁହେଁ ମୁହେଁ ଖୋଲି କହିହେବ ନାହିଁ କି କହିବା ଉଚିତ୍ ବି ନୁହେଁ । ତେବେ ଏ କଥା ସତ ଯେ ଯେଉଁମାନେ ଯଶ, ବଡ଼ପଣ, ବ୍ୟକ୍ତିଗତ ସ୍ୱାର୍ଥ ଓ କ୍ଷମତା ପାଇଁ ଲାଳାଇତ, ସେମାନଙ୍କ ସହିତ କାନ୍ଧ ମିଳେଇ ଦେଶ ବା ମଣିଷ ସମାଜ ପାଇଁ କିଛି କରିହେବ ନାହିଁ । ସତକୁ ସତ ଆପଣମାନେ ଯଦି ମୋର ସେବା ଦରକାର କରୁଥାନ୍ତି, ବାପାଙ୍କୁ ବୋଉଙ୍କୁ ବୁଝନ୍ତୁ । ସେମାନେ ଯଦି ଅନୁମତି ଦେବେ, ମୁଁ ମୋର ଜନ୍ମମାଟି ପାଇଁ, ମୋର ପ୍ରିୟ ଦେଶବାସୀଙ୍କ ସମୂହ ମଙ୍ଗଳ ପାଇଁ ଏକୁଟିଆ ଯେତେଦୂର ପାରିବି, ସମସ୍ତ ଶକ୍ତି ଲଗାଇ ଖଟିବି ।'

ବିଭୂତି ଓ ବିନାୟକ ପୂର୍ବରୁ ଏକାଠି ଠିକ୍ ଏହି କଥା ଅନୁମାନ କରି ଆସିଥିବା ଭଳି ଏକାସାଙ୍ଗରେ ଉଭୟେ ଉଭୟଙ୍କର ମୁହଁକୁ ଚାହିଁ ରହିଲେ । ଦିଜଣ ଯାକ ପରସ୍ପର ଅନୁଭବ କଲେ ଯେ, ଉମା ସାଧାରଣ ଝିଅଟିଏ ହୋଇଥିଲେ କି ହେଲା ଏଇ କେଇ ପଦ କଥାରେ ଜାତୀୟ ଜୀବନକୁ ନେତୃତ୍ୱ ଦେବାପାଇଁ ଉବୁଡ଼ା ପଡ଼ୁଥିବା ବହୁ ଲୋକଙ୍କୁ ଚେତାବନୀ ଶୁଣାଇ ଦେଇଛି ।

ବିଭୁ ବାବୁ ଅନୁରକ୍ତିଭରା ଉଚ୍ଛ୍ୱାସ ଗଳାରେ କହିଲେ, 'ସାବାସ୍ ଉମା ! ତମେ ଆମର ମାନ ରଖିଲ । ବାପାଙ୍କୁ ତ କହି ସାରିଛି । ବୋଉ ବି ସବୁ ଶୁଣିଛନ୍ତି ବୋଧହୁଏ । ଯେଉଁ ବାପା ମାଆ ତମଭଳି ଝିଅଙ୍କୁ ଜନ୍ମ ଦେଇଛନ୍ତି, ସେମାନେ କଦାପି ଶ୍ରେଷ୍ଠ ଲୋକ ହୋଇ ନ ପାରନ୍ତି ! ସେମାନେ ନିଶ୍ଚୟ ଅନୁମତି ଦେବେ, ଆଶୀର୍ବାଦ କରିବେ । ଆଶାକରେ, ଦେଶର ଏହି ଘଡ଼ିସନ୍ଧି ବେଳରେ ତୁମର ଉଦ୍ୟମ ଓ ସାହାଯ୍ୟ ଏ ଜାତି କେବେ ଭୁଲି ପାରିବ ନାହିଁ । ତମର ଯଶ, ତମର କୀର୍ତ୍ତି କଥା ଶୁଣି ପିତା, ମାତା ଧନ୍ୟ ହେବେ । ମୋର ଅନୁରୋଧ, ତମେ କାଲିଠୁଁ 'ମହିଳା ପ୍ରତିରକ୍ଷା ସମିତି'ରେ ଯୋଗଦେବ । ଆବଶ୍ୟକ କାର୍ଯ୍ୟ ଆରମ୍ଭ କରିଦେବ । ଦରକାର ବେଳେ ଯାହା କହିବ, ସାହାଯ୍ୟ କରିବାକୁ ଆମେ ଅଛୁଁ । କଂଗ୍ରେସ ଅଫିସ ସହ ବରାବର ସମ୍ପର୍କ ରଖିବ । ହଁ, ଆସନ୍ତା ବୁଧବାର ଦିନ ଭାରତର ବିଶିଷ୍ଟା ନାରୀନେତ୍ରୀ ଶ୍ରୀମତୀ ସୌରଭ ଦେଶାଇ ଜୟପୁର ଆସୁଛନ୍ତି । କଂଗ୍ରେସ ଅଫିସ ଠାରେ ତମେ ତାଙ୍କୁ ଭେଟିବ । ତା ପରେ କଣ କରିବ ନ କରିବ, ନିଜେ ନିଜେ ଠିକ୍ କରିବ ।'

ସେମାନେ ଠିଆ ହେଲେ ।

ବିନାୟକ ଗୋଡ଼ରେ ଯୋତା ଗଳାଉ ଗଳାଉ ବିଘ୍ନରାଜ ବାବୁଙ୍କୁ ଚାହିଁ କହିଲେ, 'ଆଜ୍ଞା ଆମେ ଏଥର ଯାଉଛୁ । ଉମାଙ୍କୁ ଟିକିଏ ଉତ୍ସାହିତ କରିବେ । ଆଜିର ମଣିଷ କାଲିର ନାହିଁ । ବଞ୍ଚିଥିବା ଭିତରେ ଯେଉଁ ଭଗବାନ ଆମକୁ ଏ ଦେହ, ଏ ଜୀବନ ଦେଇଛନ୍ତି, ତାଙ୍କର ଗଢ଼ା ପୃଥିବୀ ପାଇଁ, ମଣିଷ ସମାଜ ପାଇଁ ଯଦି କିଛି କରାଯାଇ ପାରେ, କରି ପାରିଲେ ଭଲ ।

ଆପଣ ତ ନିଜେ ଜଣେ ବିଶିଷ୍ଟ କୃଷକ । ଆଜି ଦେଶର ଆଉ ଗୋଟାଏ ବଡ଼ ଡାକରା ହେଉଛି— ଯେତେ ପାରିବ ଅଧିକ ଖାଦ୍ୟଶସ୍ୟ ଉତ୍ପାଦନ କରି ପ୍ରତିରକ୍ଷା ଉଦ୍ୟମକୁ ସାହାଯ୍ୟ କର । ଆଶା କରୁଛି, ଆପଣ ମଧ୍ୟ ସେ ଦିଗରେ ଲାଗିପଡ଼ି ଅନ୍ୟମାନଙ୍କୁ ଆଦର୍ଶ ଦେଖାଇବେ ।'

ବହ୍ମରାଜ ବାବୁ ମୁଣ୍ଡପୋଡ଼ି କହିଲେ, 'ଦିନ ରାତି ସେହି ଚେଷ୍ଟା ତ କରୁଛି । କୃଷି ଅଫିସର ଆଉ ଆମର ବି ଡ଼ି ଓ ଯଦି ଠିକଣା ଭାବରେ ସହଯୋଗ କରନ୍ତେ, କେତେ କଥା ହୋଇ ପାରନ୍ତା । କିନ୍ତୁ ···'

'ବୁଝିଲି । ନା ମୁଁ ଆମ ମନ୍ତ୍ରୀମାନଙ୍କ ସହ ଆଲୋଚନା କରିଛି । ସେମାନେ ଖୁବ୍ ଶୀଘ୍ର ଏଠାକୁ ଭଲ ଅଫିସରମାନଙ୍କୁ ପଠାଇବେ ।'

ବନ୍ଧୁ ବାବୁ ଉମାର ମୁକୁଳା ବାଳ ଗୋଛାରେ ଉଡ଼ି ଉଡ଼ି ବସି ପଡୁଥିବା ହଳଦିଆ ରଙ୍ଗର ଟିକି ପ୍ରଜାପତିଟିକୁ ଅନାଇଁ ଅନାଇଁ କହିଲେ, 'ଆଚ୍ଛା, ଆମେ ଯାଉଛୁ ।'

ନମସ୍କାର !

ନମସ୍କାର !

ଉଭୟେ ଦାଣ୍ଡ ଆଡ଼କୁ ମୁହଁ କଲେ । ଉମା ଘର ଭିତରକୁ ଚାଲିଗଲା ।

**ସା**ନ୍ତ୍ରା ସାହି, ଡେଉବ ସାହି, ବେଡ଼ା ସାହିର ମାଇକିନାମାନେ ଯେଉଁଠି ଲୁଗା କାଚନ୍ତି, ଗାଧୁଅନ୍ତି, ପିଲାଙ୍କ ହଗା ମୁତା କନାପଟା ଧୁଅନ୍ତି, ଖଜୁରୀ ବନ୍ଧର ସେହି ତଳ ତୁଠରେ କୁଷ୍ଠ ରୋଗୀଟିଏ ମୁହଁ ଧୋଉଥିଲା । ଦଣ୍ଡକାରଣ୍ୟବାଲା ଏ ପୋଖରୀରେ ମାଛ ପୋଷିଲା ଦିନୁ ପାଣି ସେତେ ଖରାପ ଦେଖାଯାଉ ନାହିଁ, ଦଳ ସେତେ ରୁନ୍ଧ ହେଉନାହିଁ । ତଥାପି ଲୋକେଶ୍ୱର ଦେଉଳ ସାମନା ହୁଡ଼ା ଉପରେ ଠିଆ ହୋଇ ଅନେଇଲେ ମନେହୁଏ, ଏ ସହରରେ ମ୍ୟୁନସିପାଲିଟି ନାହିଁ କି ଥିଲେ ଅଚଳ ହୋଇ ପଡ଼ିଛି । ଯାହାହେଉ ପାଣି ଟିକିଏ ନିର୍ମଳ ଦେଖାଯିବା ଦିନୁ ଦଳପତି ସାହିର, ବିଭୂତି ସାହିର ମାଇକିନାମାନେ ବି ଏଠାକୁ ଆସୁଛନ୍ତି ।

ସକାଳ ସାଢ଼େ ନଅଟା ବେଳକୁ ବିଭୂତି ସାହିର ମହାପାତ୍ର ଘର ଆଈ, ନାତୁଣୀ ତଳ ତୁଠକୁ ଖସି ଆସିଲା ବେଳକୁ ପାଣି ଭିତରେ କୁଷ୍ଠ ରୋଗୀଟାକୁ ଦେଖି ଠିଆ ହୋଇ ପଡ଼ିଲେ । ବୁଢ଼ୀର ଦେହ ଶିତେଇ ଉଠିଲା । ସେ ନାତୁଣୀ ହେମର ହାତ ଧରି ହୁଡ଼ା ଉପରକୁ ଉଠି ଯାଉ ଯାଉ କହିଲା, ଚାଲ୍ ପଳେଇବା । ଏଗୁଡ଼ାକ ମଣିଷକୁ ଆଉ ଗାଧେଇ ପାଧେଇ ଦେବେ ନାହିଁ ।

'ତୁ ନ ଗାଧେଇଲେ ନାହିଁ । ମୁଁ ଆଉ କୁଆଡ଼େ ଯିବ ନାହିଁ । ଉମା ଡଢ଼ବ । ଆଜ ସମିତିର ମିଟିଂ ଅଛି । ମୋର ବେଳନାହିଁ ।'

ହେମ ସେଇଠି ଠିଆ ହୋଇ ରହିଲା ।

'କି ମିଟିଂ ଅଛି ?'

ବୁଢ଼ୀ ଧମକେଇଲା ।

'ଯୁଦ୍ଧ ମିଟିଂ ।'

ବୁଢ଼ୀର କାନ ଫାଟିଗଲା ପରି ହେମ ପାଟି କରି କହିଲା ।

'ଯୁଦ୍ଧ ? ତୁ କଣ କରିବୁ ? ଯୁଦ୍ଧ କଏ ତୁ କଏ ? କାହିଁ କେଉଁଠି ଯୁଦ୍ଧ ଲାଗିଚି ଯେ, ଏଇଠି କଣ ହେବ ? ଆ ଯିବା ।'

ବୁଢ଼ୀ ପୁଣି ହେମକୁ ଟାଣିଲା ।

'ନାଇଁ ମୁଁ ଯିବ ନାଇଁ ଯା । ଦି ପହରରେ ଆର୍ଟ ସ୍କୁଲରେ ମିଟିଂ । ଉମା ଅପା ଏତେ କରି କହିଛି, ମୁଁ ଆଗରୁ ଗଲେ ରେଡ଼କ୍ରସରୁ ଆସିଥିବା ଉଲ୍ ଓଜନ ହେବ । ବଣ୍ଟା ହେବ । ଖାତାରେ ଚଢ଼ିବ ।'

'ଉଲ୍ ? ହଇ ଲୋ ଯୁଦ୍ଧ ଆଉ ଉଲ୍ ? କଣ ହେବ ?'

'ଆମ ଦେଶରୁ ଶତ୍ରୁଙ୍କୁ ତଡ଼ିବାକୁ ଆମର ଯେଉଁ ଭେଣ୍ଡା ଭାଇମାନେ ଲଢୁଛନ୍ତି, ଶୀତରେ ବରଫ ପାହାଡ଼ ଉପରେ ଥଣ୍ଡାରେ ଠିଆହୋଇ ଯୁଝୁଛନ୍ତି, ସେମାନଙ୍କ ପାଇଁ ଆମେ ସ୍ବେଟର ବୁଣି ପଠେଇବୁ ।'

'କଣ କରୁଚ କର । ହେଲେ ସେ ଯୁଦ୍ଧ ଫୁଦ ମୋତେ ଭଲ ଲାଗୁନାହିଁ । ଭଗବାନ କରନ୍ତେ କି ଆଜ ସେ ଯୁଦ୍ଧ ବନ୍ଦ ହୋଇ ଯାଆନ୍ତା । ମଡଗଦରେ ଯେଉଁମାନେ ଯୁଦ୍ଧ କରିବାକୁ ଆସୁଛନ୍ତି, ବାଟ ଘାଟରେ ଜଳପୋଡ଼ି ପାଉଁସ ହୋଇ ଯାଆନ୍ତେ । ହଉ, ଚାଲ ଯିବା ।'

ବୁଢ଼ୀ ପୁଣି ହେମର ହାତ ଧରିଲା । ଏତକ ବେଳକୁ କୁଷ୍ଠରୋଗୀ ଭିକାରୀଟି ତୁଠ ଉପରକୁ ଉଠି ଯାଉ ଯାଉ ଟିକଏ ଦୂରରେ ଠିଆ ହୋଇପଡ଼ି ହେମକୁ ଅନେଇ ପଚାରିଲା, ସମସ୍ତେ କହୁଛନ୍ତି ଯୁଦ୍ଧ ଲାଗିଛି । ହେଲେ କୁଉଠି ଲାଗିଚି, କାଇଁକି ଲାଗିଚି ମା ?

ଉମା ମହିଳା ପ୍ରତିରକ୍ଷା ପରିଷଦର ସମ୍ପାଦିକା ହେଲା ଦିନୁ ସହରର ସବୁ ଶ୍ରେଣୀର ଯୁବତୀ ଝିଅମାନଙ୍କୁ କଣ କେମିତି ଶିକ୍ଷା ଦିଆ କରି ଦେଇଛି ଯେ, ପ୍ରତିରକ୍ଷା କାର୍ଯ୍ୟ, ଯୁଦ୍ଧ କଥା ପଡ଼ିଲେ ଝିଅପିଲା ଭଲ ମନ୍ଦ ଏମାନେ ପ୍ରାୟ ଭୁଲି ଯାଆନ୍ତି । ହେମ କୁଷ୍ଠରୋଗୀ ଭିକାରୀ ସହିତ ମଧ୍ୟ କଥା ହେବାକୁ ଆଦୌ କୁଣ୍ଠିତା ହେଲନାହିଁ । କହିଲା, 'ଚୀନର ଚେପଟାନାକା ସୈନ୍ୟମାନେ ଗୁଳି ଫୁଟେଇ ଫୁଟେଇ ଆମ ଭାରତର ବଣ, ପର୍ବତ, ରାସ୍ତା ଘାଟ, ଗାଁ ଗଣ୍ଡା ମାଡ଼ି ବସୁଛନ୍ତି । ଆମ ଲୋକମାନଙ୍କୁ ଗୁଳିକରି ମାରି ଦେଉଛନ୍ତି । ଆମର ଭାରତ ଦେଶର ଉତ୍ତର ସୀମାରେ ହିମାଳୟ ପର୍ବତ— ନାଁ ଶୁଣିଚୁ ନା ?'

ଭିକାରୀ କହିଲା, ଶୁଣିଚି ।

'ସେଇଠି ଯୁଦ୍ଧ ଲାଗିଛି । ଯୁଦ୍ଧ କରି କରି ସେମାନେ ମାଡ଼ି ଆସୁଛନ୍ତି । ମୁହଁରେ ଯିଏ ପଡ଼ିଲା ଗୁଳିକରି ମାରି ଦେଉଛନ୍ତି । ସେମାନଙ୍କୁ ତଡ଼ିବା ପାଇଁ ଆମର ଯଉଆନମାନେ ଲଢ଼େଇ କରୁଛନ୍ତି । ଉମା ! ଉମାକୁ ଜାଣିଚୁ ? ସେ ପାନ ସାହିର ବଡ଼ ଗୃହି ଘର ଝିଅ—'

'ନାଇଁ ।'

'ଦେଶରକ୍ଷା କାମରେ ସାହାଯ୍ୟ କରିବା ପାଇଁ ଜୟପୁର ସହରରୁ ଆଗୁସାର ହୋଇ ସେ ବାହାରିଛି । ଟଙ୍କା, ସୁନା, କମ୍ବଳ, ସ୍ୱେଟର ଆମେ ସଂଗ୍ରହ କରି ଆମ ଦେଶର ଲଢୁଆ ଯଉଆନମାନଙ୍କ ପାଇଁ ପଠାଉଛୁ । ବହୁ ଲୋକ ଦାନ ଦେଉଛନ୍ତି । ଗ୍ଭେଟ ଗ୍ଭେଟ ପିଲାମାନେ, ଭିକାରୀମାନେ ଆପଣା ପେଟରୁ କାଟି ସାହାଯ୍ୟ କରୁଛନ୍ତି ।'

ହେମ ଦେଖିଲା, ତନ୍ମୟ ହୋଇ ଭିକାରୀଟି ତା କଥା ଶୁଣୁଚି ଆଉ ତା ଗୃହ ପାଖରେ ବରଗଛମୂଳେ ଖେଳୁଥିବା ପିଲାମାନେ, ଆର ଘାଟରେ ଆଗରୁ ଗାଧୋଉ ଥିବା ମାଇକିନାମାନେ, ଲୋକେଶ୍ୱର ମନ୍ଦିରର ପୂଜାରୀ ଓ ତା ସାଙ୍ଗ, ଡାକ ନାଁ ଭୋମ୍ ଭୋମ୍ ଭୋଳାନାଥ, ଆହୁରି କେତେ ଲୋକ ରୁଣ୍ଡ ହୋଇ ଆଁ କରି ତା କଥା ଶୁଣୁଛନ୍ତି । ଆଈ ବୁଢ଼ୀ ମଧ୍ୟ ବାଧା ନ ଦେଇ ଜୁଳୁ ଜୁଳୁ ଅନେଇ ରହିଛି ।

ସମସ୍ତଙ୍କ ମୁହଁକୁ ଥରେ ଥରେ ଗ୍ଭହିଁ ଦେଲାରୁ ଉମାକୁ କେମିତି ଅଡୁଆ ଅଡୁଆ ଲାଗିଲା । ସେ ଆଉ କିଛି ନ କହି ଆଈ ବୁଢ଼ୀ ପାଖକୁ ଗ୍ଭଲିଯାଇ ପଗ୍ଭରିଲା, 'ଆଈ, ତୁ ଗାଧେଇବୁ ନାହିଁ ?'

'ଗୃ ଆଉ ଭୁଠକୁ ଯିବା ।'

ଏ କହେଁ ଚାଲିଯିବାରୁ ଅନ୍ୟମାନେ ବି ଚାଲିଗଲେ । କିନ୍ତୁ କୁଷ୍ଠରୋଗୀ ଭିକାରୀଟି କୁଆଡ଼େ ନ ଯାଇ ପୁଣି ସେହି ଭୁଠର ପଥର ଉପରେ ବସି ବସି କଣ ସବୁ ଭାବିବାକୁ ଲାଗିଲା । ଅନେକ ସମୟ ବସିଲା ପରେ ସେ ପଥର ତଳ ବାଲି ଉପରେ ତାର ରକ୍ତ ସରସର କନା ଗୁଡ଼ିଆ ହାତ ଲମ୍ବେଇ ମଝି ଆଙ୍ଗୁଠି ଟିପରେ ଛବି ଆଙ୍କିଲା ।

ହିମାଳୟ ପର୍ବତ । ତା ପାଖରେ ନଦୀ, ନାଳ । ଚେପ୍‌ଟାନାକା ଚୀନ୍ ସୈନ୍ୟମାନେ ବନ୍ଧୁକ କାନ୍ଧେଇ ଆଗେଇ ଆସୁଛନ୍ତି । ଭାରତୀୟ ଯବାନମାନେ ଲମ୍ବା ଲମ୍ବା ତେଣ୍ଟାଧରି ତାଙ୍କ ଗୁନ୍ତିରେ ଭୁଷି ଦେଉଛନ୍ତି । ପିଚ୍ ପିଚ୍ ରକ୍ତ ବାହାରୁଛି । ଗୋଟେ ଦିଟା ଚୀନ୍ ସେନା ଟଳି ପଡ଼ୁଛନ୍ତି ।

ତା ଦ୍ୱାରା ଯେତିକି ହୋଇ ପାରିଲା, ଆଙ୍ଗୁଠିରେ ଗାରକାଟି ସେତିକି ଛବି ଆଙ୍କି ସାରିଲା ପରେ ଭିକାରୀଟି ଖେଁ କରି ହସି ଉଠିଲା । ଭାରତୀୟ ଯବାନ ଚୀନା ସେନା ଗୁନ୍ତିରେ ତେଣ୍ଟା ଭୁଷି ଦେଉଥିବା ଛବିଟାକୁ ଭଲ କରି ଦେଖୁ ଦେଖୁ ଗର୍ବ ଦର୍ପରେ ତା ଛାତିଟା କେମିତି ଫୁଲିଗଲା ପରି ଲାଗିଲା । ଅନେକ ସମୟ ଯାଏ ସେ ସେଇ ଛବିଟିକୁ ଅନେଇ ଅନେଇ ବସି ରହିଲା ।

ସେତେବେଳ ଠାରୁ ଏଇ ଭିକାରୀଟି ରାସ୍ତାରେ ଗଲାବେଳେ, ଭିକ ମାଗିଲା ବେଳେ ଯେତେବେଳେ ପିଲାମାନଙ୍କୁ ଦେଖେ ବଡ଼ ପାଟିରେ କହେ, ଭାରତ ମାତାକି ଜୟ ! ଚୀନ୍ ବାଲେ ହଟ୍‌ଯାଅ !

ଶୁଣିଲା ଲୋକ ଖୁସି ହୁଅନ୍ତି । ପଇସେ ଦି ପଇସା ଅଧିକା ବି ମିଳେ । ମନ ଭିତରେ କେମିତି ଗୋଟାଏ ନୂତନ ଓଜ, ତେଜର ତରଙ୍ଗ ପଶିଗଲା ପରି ଲାଗେ ।

ସହରରେ ନାରୀ ଜାଗରଣ ଚମତ୍କାର ସୃଷ୍ଟି କରିଛି । ଶହ ଶହ ଭରି ସୁନା, ହଜାର ହଜାର ଟଙ୍କା ପ୍ରତିରକ୍ଷା ପାଣ୍ଠି ପାଇଁ ଜମା ହେଉଛି । ମହିଳା ଗୃହରକ୍ଷୀ ବାହିନୀ ଗଠନ ପାଇଁ ଯତ୍ନ କରାଯାଉଛି । ଉମାର, କବିତାର ସୁନାମ ବଢ଼ି ଚାଲିଛି ।

ବଡ଼ ସାନଙ୍କ ଇଚ୍ଛା ଅନୁସାରେ ମହଲା ପ୍ରତିରକ୍ଷା ପରିଷଦକୁ ନେତୃତ୍ୱ ଦେବାର ସମସ୍ତ ଭାର ଉମା ମୁଣ୍ଡରେ ପଡ଼ିଛି ! ଉମା ଭଳି ଘର କୋଣର କୁଳ କନ୍ୟାଟିଏ ଏପରି ଭାବରେ ଦେଶକାର୍ଯ୍ୟ ସମ୍ପାଦନ କରିପାରେ, ଏ ଧାରଣା ଯେଉଁମାନଙ୍କର ନଥିଲା ସେମାନେ ଆଶ୍ଚର୍ଯ୍ୟ ହୋଇଛନ୍ତି ।

ମଞ୍ଜୁମାଳା ଧନା କେତେ ବିବ୍ରତ ହୋଇ ପଡ଼ିଲା । ଏହାଦ୍ୱାରା ଦେଶସେବା ଛଳନାରେ ସେ ଅର୍ଜନ କରିଥିବା ସକଳ ପ୍ରତିପତ୍ତି ମାଡ଼ ଖାଇଯିବ ଭାବି ଏବେ ପ୍ରମାଦ ଗଣିଲାଣି । ଭିତରେ ଭିତରେ ଉମାର ପ୍ରତିଦ୍ୱନ୍ଦ୍ୱୀ ହେବାଲାଗି ଉଦ୍ୟମ ଆରମ୍ଭ କରି ଦେଲାଣି ମଧ୍ୟ ।

ଗଡ଼ନାୟକେ ଚା ପିଉଥିଲେ । ଉମା ଓ କବିତା ବାହାରପଟୁ ଆସି ଠିଆହେଲେ ।

'କଣ କେମିତି ଚାଲିଛି ?' ଗଡ଼ନାୟକ ପଚାରିଲେ ।

ହସି ହସି ଉମା ଉତ୍ତର ଦେଲା, ଆପଣଙ୍କର ମନ-ପବନ-ଘୋଡ଼ା ଭଳି ।

କବିତା ପ୍ରତିବାଦ କଲା, ସେମିତି ନୁହେଁ । କାମ ଚାଲିଛି ନଈରେ ବଢ଼ି ପାଣି ମାଡ଼ି ଚାଲିଲା ପରି ।

'ସତରେ କଣ କେମିତି ସବୁ ହେଉଛି ?'

ଗଡ଼ନାୟକେ ଗମ୍ଭୀର ହୋଇ ପଚାରିଲେ । ଉତ୍ତରରେ ଉମା କହିଲା, ଭଲ । ତେବେ ଏକା ସଙ୍ଗରେ ସମସ୍ତ ରକ୍ଷଣଶୀଳ ମହଲରୁ ସହଯୋଗ ମିଳୁନାହିଁ । ତଥାପି ମୋଟାମୋଟି କାମ ଭଲ ହେଉଛି । କ୍ରମେ କ୍ରମେ ଅଧିକରୁ ଅଧିକ ଝିଅ ବୋହୂ ଆକୃଷ୍ଟ ହେଉଛନ୍ତି । ଭାରତୀୟ ସୀମାନ୍ତ ବିପତ୍ତିର ରୂପରେଖ ଯିଏ ବୁଝି ଯାଉଛି, ସେ ଟୋକି ହେଉ କି ବୁଢ଼ୀ ହେଉ ଜୀବନ ପଣ କରି ଆଗେଇ ଆସୁଛି । ଏହାହିଁ ଆନନ୍ଦ !'

'କଥା ହେଉଛି, ପ୍ରତ୍ୟେକ ମଣିଷ ହୃଦୟରେ ଦେଶପ୍ରୀତି, ଜାତୀୟ ମମତା ଜନ୍ମଗତ ସ୍ୱଭାବରୂପେ ରହିଅଛି । କିନ୍ତୁ ତାକୁ ସମୂହ ଭାବରେ ଚାଳିତ, ଜାଗ୍ରତ କରିବା ଲାଗି ଜଣେ ଦି ଜଣ ଉଦାର ମନରେ କାର୍ଯ୍ୟ କରିବା ଦରକାର । ସକଳ ବ୍ୟକ୍ତିଗତ ସ୍ୱାର୍ଥତ୍ୟାଗ କରିବା ଆବଶ୍ୟକ, ଯାହା କି ତୁମେ କରୁଛ । ଏପରି ଭାବରେ ଯଦି କାମ କରାଯାଏ, ତା ହେଲେ ସବୁ ସଫଳତା ଅକ୍ଳେଶରେ ସମ୍ଭବ ହୋଇ ପାରିବ । ଆପଣା ଛୁଏଁ ଏ ଦେଶ ଆପଣା ଗୋଡ଼ରେ ଠିଆହେବ ।

ଅନେକ ମନେ କରନ୍ତି, ଲୋକ ଯଦି ଦେଶ ଗଠନ, ଜାତି ନିର୍ମାଣ ପାଇଁ ସମସ୍ତ ସମୟ ବିନିଯୋଗ କରିବ, ସେ ଖାଇବ କଣ ? ପିନ୍ଧିବ କଣ, କୁଟୁମ୍ବ ପୋଷିବ କେମିତି ? କିଏ ତାକୁ ଦେବ ? ସେ ନିଶ୍ଚୟ ଦରିଦ୍ର ହୋଇଯିବ, ତାର ପୁଅ ଝିଅ ଭିକ ମାଗିବେ । ତାର ସକଳ ସାମାଜିକ ସୌଭାଗ୍ୟ ଉଜୁଡ଼ି ଯିବ । କିନ୍ତୁ ପ୍ରକୃତିରେ ତା ହୁଏନାହିଁ । ମଣିଷ ଯଦି ତା ମନରୁ ଏହି ଭୟ, ଏହି ଆଶଙ୍କା ଦୂର କରିଦେଇ ପାରେ, ତା ହେଲେ ତମେ ଦେଖିବ ଉମା, ଏ ମଣିଷ କେଡ଼େ ଟାଣୁଆ ହୋଇ ପାରିବ, ଅସମ୍ଭବକୁ ବି ସମ୍ଭବ କରି ପାରିବ । ମୁଁ ଆଶା କରୁଛି, ତମେ ଏ କଥା କରି ପାରିବ, ତ୍ୟାଗ ବଳରେ ଯେ ମାନବିକତାର ପ୍ରକୃତ ମହିମାର ପ୍ରତିଷ୍ଠା ହୋଇପାରେ, ଏହା ଦେଖାଇ ଦେବ ।'

କବିତା କହିଲା, ମୋ ମତରେ ମଣିଷ ମନରୁ ଏହି ଡରର ଚେର ଓପାଡ଼ିବାର ବାଟ ହେଉଛି, ଆପଣା ଦେହ, ଆପଣା ଘର ସଂସାର, ପାରିବାରିକ ସ୍ନେହ-ବନ୍ଧନ ଓ ଆପଣା ଜୀବନ ପ୍ରତି ମମତା ତୁଟେଇ ଦେବା । ସାଧାରଣ ଲୋକେ ଯାହାକୁ ଦୁଃଖ କହନ୍ତି, କଷଣ କୁହନ୍ତି, ମୃତ୍ୟୁ ବୋଲି ଭୟ କରନ୍ତି, ତାକୁହିଁ ସୁଖର, ଆନନ୍ଦର କାରଣ ବୋଲି ଯିଏ ଧରିନେଇ ପାରିବ, ସେ ନିର୍ଭୀକ ହେବ ଓ ଯାହା ଇଚ୍ଛା କରି ଦେଇ ପାରିବ ।'

ଉମା ତନ୍ମୟ ହୋଇ ଗଡ଼ନାୟକ ବାବୁଙ୍କ ମୁହଁକୁ ଚାହିଁ କହିଲା, ଆପଣଙ୍କର ସଦିଚ୍ଛା ଓ କବିତା ନାନିର ଆନ୍ତରିକତା ହିଁ ମୋ ଜୀବନର ଅବ୍ୟର୍ଥ ପ୍ରେରଣା ! ଏହାଠୁଁ ବଳେଇ ଆଉ ଅଧିକ କିଛି ମୁଁ ଚିନ୍ତା କରେ ନାହିଁ ।'

କବିତାର ଅନ୍ତର ଉଲ୍ଲସିତ ହୋଇ ଉଠିଲା । ଗଡ଼ନାୟକ ଆଉ କଣ କହି ଆସୁଥିଲେ, ଚାକର ଆସି କହିଲା, କିଏ ଦି ଜଣ ଝିଅ ଆସିଛନ୍ତି ।

'ଭିତରକୁ ଡାକି ଆଣ ।' ଗଡ଼ନାୟକ ନିର୍ଦ୍ଦେଶ ଦେଲେ ।

ଜଣେ ବ୍ଲକ୍ ଅଫିସ କିରାଣିଙ୍କ ସାନ ଭଉଣୀ; ବୟସ ଏଗାର କି ବାର ବର୍ଷ ହେବ । ଆର ଜଣକ ସେବାଶ୍ରମ ସ୍କୁଲ ମାଷ୍ଟ୍ର ଗୌରାଙ୍ଗ ବାବୁଙ୍କ ଝିଅ ରେଣୁ, ସେହି ବୟସର । ଦିହେଁ ଭିତରକୁ ଆସି ଏମାନଙ୍କୁ ନମସ୍କାର କଲେ ।

'କୁଆଡ଼େ ଆସିଲ ମା ?' କବିତା ଦୁଇ ଝିଅଙ୍କ ମଥା ଆଉଁସି ପଚାରିଲା ।

'ଆମେ ଉମା ଅପାଙ୍କୁ ଖୋଜୁଛୁ ।' ଲଜ୍ୟା ଓ ଆଶଙ୍କାରେ ଦି ଝିଅ ଯାକ ସଡ଼ି ଯାଉଥିଲେ ।

'ହେଇଟି ତୁମର ଉମା ଅପା ।'

ଗଡ଼ନାୟକେ ହସି ହସି ଆଙ୍ଗୁଠି ଦେଖାଇ ଦେଲେ । ଉମା ଆଗେଇ ଆସି ଝିଅ ଦୁଇଟିଙ୍କୁ ଆଲିଙ୍ଗନ କରି ପଚାରିଲା, କଣ ? କୁହ !

ଉମାର ମୁହଁକୁ ଚାହିଁ ଚାହିଁ ଝିଅମାନଙ୍କ ଆଖି ଛଳଛଳ ହେଲା । ଭକ୍ତି ଓ କୃତଜ୍ଞତାରେ ସେମାନଙ୍କ ହୃଦୟ କୃତ୍ୟକୃତ୍ୟ ହୋଇ ଉଠିଥିଲା ପରି ଜଣାଗଲା । ଉଭୟେ କାଗଜ ଖୋଲ ଫିଟାଇ ଦୁଇ ଟଙ୍କିଆ ନୋଟ ଦି ଖଣ୍ଡ ବାହାର କରି ବଢ଼େଇ ଦେଲେ ।

ଆଶ୍ଚର୍ଯ୍ୟ ହୋଇ ଉମା ପଚାରିଲା, ଏ କଣ ?

'ଯୁଦ୍ଧ ଚାନ୍ଦା !'

'କେଉଁଠୁ ପାଇଲ ଏ ଟଙ୍କା ? କିଏ ଦେଲା ?'

'ଘରେ ଯେତେ ପୁରୁଣା ଅଲୋଡ଼ା ଖବର କାଗଜ, ମେଗାଜିନ୍ ଥିଲା ଜମେଇ ଜମେଇ ଆଜ ବିକଦେଲୁ । ଆମର ଯେଉଁ ଭାଇମାନେ ଆମ ଦେଶକୁ ରକ୍ଷା କରିବାକୁ ଲଢ଼େଇ କରୁଛନ୍ତି, ତାଙ୍କ ଠାକୁ ଏ ଟଙ୍କା ପଠେଇ ଦିଅ ଉମା ଅପା ।'

'ବାପା ମାଆଙ୍କୁ କହିଛ ?'

'ହଁ । ବାପା ତ କହିଲେ, ଏ ଟଙ୍କା ଉମା ଅପାକୁ ଦେଲେ, ସେ ପଠାଇ ଦେବେ ।'

'ସାବାସ !' ଉମା ଏକା ସାଙ୍ଗରେ ଦୁଇଟିଯାକ ଝିଅଙ୍କୁ ଗୁଡ଼ିରେ ଜାକ ଧରି ଘିରି ଘିରି ହୋଇ ଦି ତିନ ଥର ବୁଲି ପଡ଼ିଲା । କବିତା କହିଲା, ତମେ ଦି ଝିଅ ବସ । କଣ ପଢ଼ୁଛ ? ଦେଶପାଇଁ ତମର ଦରଦ ଦେଖି ମୋତେ ଲାଜ ମାଡ଼ୁଛି । ତମ ଭଳି ଝିଅଙ୍କୁ ନ ଖୋଇ ନ ପେଇ ଏ ଘରୁ ମୁଁ ଛାଡ଼ ପାରିବ ନାହିଁ । ବସ, ବସ !'

'ବାଃ···' ଗଡ଼ନାୟକେ ଖୁସିରେ ମସଗୁଲ ହୋଇଗଲେ । 'ତାହାହେଲେ ଉମା ମଧ୍ୟ ଏଠି ଖାଇବେ ।' ସେ ଉଚ୍ଚ ଗଳାରେ କହିଲେ ।

'ନା ମୁଁ ଖାଇବ ନାହିଁ ।'

'ଓଃ ଆମେ ପରା ପରଲୋକ । ପର ଘରେ ଖାଇବେ କେମିତି ! ଠିକ୍ କଥା । ନା ତାଙ୍କୁ କୁହନାହିଁ ।' ଗଡ଼ନାୟକେ ଅଭିମାନ କଲେ ।

'ବାସ୍, ଆରମ୍ଭ ହୋଇଗଲା ବାଲ୍ୟ ଚପଳତା । କବିତା ନାନି, ମୁଁ ମଧ ଖାଇବି । ଖାଇ ଖାଇ ମରିବି । ଅନ୍ୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏ ସମାଜରେ ନିଜକୁ ତିଳ ତିଳ କରି ପୋଡ଼ି ଜାଳି ଦେବାକୁ ହିଁ ହେବ ।'

ଝିଅମାନେ ନାହିଁ ନାହିଁ କରୁଥିଲେ । ତାଙ୍କୁ ବି ବାଧ କରାଗଲା । ଧୁମ୍ ଧାମ୍‌ରେ ଖିଆ ପିଆ ସରିଲା । ଏମାନେ ଖାଇସାରି ହାତ ଧୋଉଛନ୍ତି, ହେମ ଆଉ ମଞ୍ଜୁମାଳା ଉମାକୁ ଖୋଜି ଖୋଜି ହାଜର ହୋଇଗଲେ ।

'ଆରେ ସତରେ ଡେରି ହୋଇ ଗଲାଣି । ଚାଲ ଚାଲ ।'

କବିତା କହିଲା, ଚାଲ ଲୁଗା ବଦଳାଇ ଆସୁଛି ।

ମଞ୍ଜୁମାଳା ମୁହଁଟାକୁ ଫୁଲେଇ ଦେଇ କହିଲା, 'ଏମାନଙ୍କୁ ଏମିତି ମୁହଁ ଦେଲେ ଚଳିବ ନାହିଁ । ତାଙ୍କୁ ଯେଉଁଠି ସେଇଠି ସିଧା କରି ଦେବାକୁ ହେବ ।'

'କାହାକୁ ?' ଉମା ପଚାରିଲା ।

'କାଲି ସନ୍ଧ୍ୟାରେ କଂଗ୍ରେସ ଅଫିସରୁ ଫେରୁଥିଲୁ । ତମ କଥା, କବିତା ନାନି କଥା ପଡ଼ିଲା । ମାଧବୀ ମାଉସୀ ହାତ ହଲେଇ ହଲେଇ କହିଲା, ବଡ଼ ଗଲେ ଫସର ଫାଟି, ସାନ ଆଇଚ ବେସର ବାଟି । ଏମାନେ କି କାମ କରିବେ, ଆମେ କଣ ଜାଣିନୁ ? ଦେଶରକ୍ଷା କାମ ନାଁରେ ଫାଲ୍‌ତୁଟାରେ ଯା ଘର ତା ଘର ଧେଇ ଧେଇ ହେଇ ବୁଲିବେ, ହେଁ ହେଁ ଫେଁ ଫେଁ ହେବେ, ରିକ୍‌ସା ଭଡ଼ା, ଗୁହା ପାନ ପଇସା ପାଣ୍ଠିରୁ ବରବାଦ୍ ହେବ । ସାଙ୍ଗ ସୁଖରେ ତାଙ୍କର କାଳ କଟିବ ।'

'କିଏ କହୁଥିଲା ବା ? ମୋତେ ସେତେବେଳୁ କହୁନୁ, ତା ଚୁଟି ଧରି ଟାଣି ଘୋସାଡ଼ି ଆଣି ପଚାରିବି !! ସେ କଣ ଖେଳ ଖେଳୁଛି ? ନା ସାପ ଲାଞ୍ଜରେ କାନ କୁଣ୍ଡାଉଛି ?' ହେମ ଗର୍ଜନ କଲା ।

ଗଡ଼ନାୟକେ, ଉମା ଓ କବିତା ଏକା ସାଙ୍ଗରେ ଡରିଗଲେ ଏ ରଣଚଣ୍ଡୀର ପାଟି ଶୁଣି । ଉମା ଦୃଢ଼ ଭାବରେ ପ୍ରତିବାଦ କରି କହିଲା, ଶୁଣ ମଞ୍ଜୁ, ହେମ, ଏପରି କୌଣସି ସମ୍ବାଦ ମୋତେ ଦେବନାହିଁ କି ତମେ ଶୁଣିଲେ ବି ମନେ ରଖିବ ନାହିଁ । କେବେ ହେଲେ ମଧ ପ୍ରତିଶୋଧ ନେବନାହିଁ । ଯଦି ସେପରି କେବେ କରିଥିବା ଶୁଣିବି, ସତ କହୁଛି, ସେହି ମୁହୂର୍ତ୍ତରେ ମୁଁ ଇସ୍ତଫା ଦେଇ ଚାଲିଯିବି ।'

ହେମର ମୁହଁ ସୁଖିଗଲା । ମଞ୍ଜୁମାଳା ଦୁଃଖିତ ହେଲା କି ଆନନ୍ଦିତ ହେଲା, ଜଣା ପଡ଼ିଲା ନାହିଁ । କେଜାଣି କାହିଁକି ହଠାତ୍ ମଞ୍ଜୁମାଳାର ପୂର୍ବକୀର୍ତ୍ତି କଳାପ ସ୍ମରଣ କରି ଉମା ତା ମୁହଁକୁ ଗାଡ଼େଇ ଅନେଇଲା । ମଞ୍ଜୁମାଳା ମଧ୍ୟ କ୍ଷଣକ ପାଇଁ ମନେ ମନେ ଇତସ୍ତତଃ ହୋଇ ପଡ଼ିଲା । ସମସ୍ତେ ଗଡ଼ନାୟକଙ୍କ ଠାରୁ ବିଦାୟ ନେଇ ପ୍ରତିରକ୍ଷା ପରିଷଦର କାର୍ଯ୍ୟାଳୟ ଆଡ଼କୁ ଆଗେଇ ଗଲେ ।

ଜିଲ୍ଲା କଂଗ୍ରେସ ସେକ୍ରେଟେରୀ ଟିଲୁ ସାଆଁତ ଚେକ୍ ଭଙ୍ଗେଇ ସାର ବେଙ୍କ ସାମ୍ନା ପାନ ଦୋକାନରେ ପାନ କିଣୁଥିଲା । ସେ ଜାଣେ ଯେ ସିଏ ରାସ୍ତାରେ ଯେଉଁଠି ଠିଆ ହେବ, ସେଠି ପଲେ ଭିକାରୀ ବେଢ଼ିଯିବେ । ତେଣୁ ସେ ଠିଆ ହେଉ ହେଉ କୁଷ୍ଠରୋଗୀ ଭିକାରୀଟିଏ ଆଗରେ ଠିଆ ହେବାରୁ ମୁହଁ ଫେରାଇ ନେଲା । କିନ୍ତୁ ସେ ଭିକାରୀଟି ଗୁଡ଼ିଲା ନାହିଁ । ପାଖକୁ ଲାଗି ଆସି ବଡ଼ ପାଟିରେ ପଚାରିଲା, ବାବୁ ! ଉମା ଦେବୀଙ୍କ ଘର କେଉଁଠି କି ?

'କି ଉମା ଦେବୀ କରେ ?' ଟିଲୁ ସାଆଁତ ବିରକ୍ତ ହେଲା ।

'ଦେଶରକ୍ଷା କାମ କରନ୍ତି । ଯୁଦ୍ଧକଲା ବାଲାଙ୍କଠାକୁ ଟଙ୍କା, ସୁନା ପଠାନ୍ତି ।'

'ପାନ ସାହିରେ; ବିଦ୍ୟାଧର ବାବୁଙ୍କ ଘର କେଉଁଠି ବୋଲି ପଚାରିଲେ, ସେ ସାହିର ଯିଏ ହେଲେ କହିଦେବେ ।'

ପାଞ୍ଚ ପଇସିଟିଏ ଫୋପାଡ଼ି ଦେଇ ଟିଲୁ ଭାଇନା ଚାଲିଗଲା ।

ଭିକାରୀଟି ପଚାରି ପଚାରି ଦିପହର ବେଳକୁ ବିଦ୍ୟାଧର ବାବୁଙ୍କ ଦୁଆର ମୁହଁରେ ପହଞ୍ଚିଲା । ଅଣଓସାରିଆ ଚଉଡ଼ା ଲୁହା ଦରଜାଟି ଖୋଲାଥିଲା । କିନ୍ତୁ ତା ଭିତରକୁ ପଶିଯିବା ପାଇଁ ତାର ସାହସ ଅଣ୍ଟିଲା ନାହିଁ । ମାଛି ଭଣ ଭଣ ଦେହ ଓ କାଳିଆ ମସିଆ ପୋଷାକ ଆଡ଼କୁ ଦୁଇ ତିନି ଥର ଅନେଇ ଦେଇ ନୀରବରେ ସେ ବସି ପଡ଼ିଲା । ଭାବିଲା, ବାହାରୁ ଘର ଭିତରକୁ, ଭିତରୁ ବାହାରକୁ ଯେଉଁମାନେ ଯିବା ଆସିବା କରୁଛନ୍ତି, ସେମାନଙ୍କୁ ପଚାରିବ, 'ଉମା କିଏ ?' କହିବ, 'ତାଙ୍କୁ ଟିକିଏ ଡାକି ଦିଅ !' ପୁଣି ଭାବିଲା, ନା, ତା ଦେଇ ଏ କଥା କହି ହେବ ନାହିଁ ।

ସାନ ତୁଣ୍ଡରେ ଏଡ଼େ କଥା— 'ଉମା ଦେବୀଙ୍କୁ ଡାକ, ମୁଁ ତାଙ୍କୁ ପଇସା ଦାନ କରିବ ।' ଏଡ଼େ କଥା ସେ ତାର ଘୃଣ୍ୟ ରୁଗ୍‌ଣ ମୁହଁରେ କପରି କହିବ ? କେମିତି କହିବ ?

ନୀରବରେ ସେ ଦରଜା ସେ ପାଖକୁ ଅନେଇ ଅନେଇ ବସି ରହିଲା ।

ସେ ଦିନ ଉମା ଖାଇ ସାରି ଶୋଇ ପଡ଼ିଥିଲା । ତା ଜୀବନରେ ଆଗରୁ ସେ କେବେ ଲଗ୍ ଲଗ୍ ଏତେ ପରିଶ୍ରମ କରି ନଥିଲା । ଆଜି ସକାଳଠୁ ଟିକିଏ ବେଶି ବାଧିଥିଲା, ବଡ଼ ଅଳସ ଅଳସ ଲାଗୁଥିଲା ।

ତିନିଟା ବେଳକୁ ନିଦ ଭାଙ୍ଗିଲା । ଘରକର ବାକିର ଯିଏ ଯୁଆଡ଼େ ଶୋଇ ପଡ଼ିଥିଲେ । ମୁହଁ ହାତ ଧୋଇବା ପାଇଁ କୂଅ ମୂଳକୁ ଯାଇ ଉମା ଦେଖିଲା, ଶାଗୁଆ ମଚମଚ କଅଁଳିଆ ଶାଗ ପଟାଳିଟାକୁ ପାଡ଼ୀ ଘର ଗେହ୍ଲିଣୀ ଗାଈଟି ଚରି ଯାଉଛି । ହାତ ପାଖରେ ଆଉ କିଛି ନ ପାଇ ପରିଷ୍କାର କରିବା ପାଇଁ ଥୁଆ ହୋଇଥିବା ମହାତ୍ମା ଗାନ୍ଧୀଙ୍କ ବଡ଼ ଫୋଟଟିକୁ ଉଠାଇ ଆଣି ଦୁଇ ହାତରେ ମୁଣ୍ଡ ଉପର ଯାଏ ଉଞ୍ଚେଇ ଗାଈକୁ ଡରେଇଲା, ଘଉଡ଼ାଇ ନେଲା । ଯାଉ ଯାଉ ଗାଈ ପଛେ ପଛେ ବାରମୁଣ୍ଡି ଆଳ ମୁନଗା ଗଛଯାଏ ଧାଇଁଗଲା । ଜାଣି ସିଆଣି ଗେହ୍ଲିଣୀ ଗାଈଟି କୁଆଡ଼େ ନା କୁଆଡ଼େ ଅଦୃଶ୍ୟ ହୋଇଗଲା ଆଖି ପିଛୁଳାକେ । ଉମା ସେଠି ଠିଆ ହୋଇପଡ଼ି ଦମ୍ ନେଇଁ ନେଇଁ ମହାତ୍ମା ଗାନ୍ଧୀଙ୍କ ଫୋଟଟିକୁ ମୁହଁ ଆଗରେ ଧରି ଏକ ଲୟରେ ନିରେଖିଲା । ମିନଟ୍ ମିନଟ୍ କଟିଗଲା ଏକ ଦୁର୍ଲଭ ତନ୍ମୟତା ଭିତରେ । ତାର ମନତଳେ ମହାମାନବ ମହାତ୍ମା ଗାନ୍ଧୀଙ୍କ ଜୀବନର ଗମ୍ଭୀର ଆବେଦନ ମୂର୍ତ୍ତିମନ୍ତ ହୋଇ ମଣିଷ-ଇତିହାସର ଏ ଭାଗ ଓ ସେ ଭାଗର ତାତ୍ପର୍ଯ୍ୟ ଅଙ୍କନ କରିବାକୁ ଲାଗିଲା । କ୍ରମେ କ୍ରମେ ଉମାର ଅନାସକ୍ତ ଅକ୍ଷିରୁ ଟୋପା ଟୋପା ଲୁହ ଝରି ପଡ଼ିଲା ।

'ମଣିଷ ଭିତରେ ତୁମେ ଭଗବାନଙ୍କୁ ଦେଖ । ତାଙ୍କର ସେବାକୁ ବ୍ରତ ମଣ । ମାୟାର ମରଣାନ୍ତକ ମିଥ୍ୟା ଆକର୍ଷଣ ପଛରେ ଆୟୁଷ, ବୟସକୁ ନଗାଡ଼ି ଦିଅନାହିଁ ।' ଉମାର ଅନ୍ତର ତଳେ ଏ ବାଣୀ ପ୍ରତିଧ୍ୱନିତ ହେଲା । ସେ ମନେକଲା, ଗାନ୍ଧୀ ତାକୁ ଉପଦେଶ ଦେଉଛନ୍ତି । ବିହ୍ୱଳିତ ଭାବରେ ମନେ ମନେ ପଚାରିଲା, ବାପୁ ! ତମେ ଚାଲିଗଲ କାହିଁକି ? ନା ବାପୁ, ତମେ ମରିନାହିଁ, ତମେ ମରି ପାରନା ! ତମେ ତ କହିଥିଲ ବାପୁ, ଏ ଆତ୍ମା ଅମର ? କାହିଁ ତମର ଅମର ଆତ୍ମା ? ଏଁ ତମର ଅମର ଆତ୍ମା ପବନରେ

ବୁଲୁଛ ? ମୁଁ ଡାକୁଛ, ମୁଁ ଅନୁନୟ ହୋଇ ପ୍ରାର୍ଥନା କରୁଛୁ, ତୁମେ ତୁମର ଆନ୍ତରିକ ଆଶୀର୍ବାଦର ଅମୃତ ଢାଳିଦିଅ, ମୋ ଆତ୍ମାକୁ ସ୍ପର୍ଶ କର ! ଏ ବିପତ୍ତି ବେଳେ ଦେଶକୁ ରକ୍ଷା କରିବା ପାଇଁ ମୋର ଭିତରେ ପଶି କାମ କର !

ବାପୁ ! ତମେ ମଞ୍ଜୁମାଳା ଭଳି ମୋ ଦେଶର ଝିଅ, ବୋହୂମାନଙ୍କୁ ଅଣବାଟରୁ ଫେରାଇ ଆଣ ବାପୁ ! ମାଧବୀ ମାଉସୀ ଭଳି ନାରୀମାନଙ୍କୁ ସଚେତନ କରାଅ । ତମେ କବିତା ନାନି ଭଳି ଝିଅମାନଙ୍କ ମନକୁ ଉଜ୍ଜ୍ୱଳ, ପ୍ରଖର କର ! ହେମ ଭଳି ଝିଅମାନଙ୍କ ମନରେ ବଳ ଦିଅ, ସ୍ଥିରତା ଦିଅ, ସୁବିଗ୍ରହ ଦିଅ ! ଆମେ ସମସ୍ତେ ଏକ ହୋଇ ଦେଶର ଶତ୍ରୁ ବିରୁଦ୍ଧରେ ଠିଆ ହେବୁ । ଜାତିକୁ ଗଠନ କରିବୁ । ତମ ଭଳି ପ୍ରାଣପାତ୍ କରିବୁ ବାପୁ ! ପ୍ରାଣପାତ୍ କରିବୁ ।

ତିି ତିି ଦିପହର ଖରାଟାରେ ଠିଆହୋଇ ଉମା ମନେ ମନେ ପ୍ରାର୍ଥନା କରିବାକୁ ଲାଗିଲା । ସେ ଜାଣିପାରି ନଥିଲା ଯେ କେତେବେଳୁ ତାର ପଛପଟେ ପିଢାରେ ଯୋଡ଼ା ହୋଇଥିବା କାବରା ଚନ୍ଦା ବାଛୁରୀ ଦିଟା ଠିଆ ହୋଇ ପଣତ ଶୁଙ୍ଘୁଛନ୍ତି । ଯେତେବେଳେ ସେମାନେ ଟିକିଏ ବେଶି ଟଣାଟଣି କଲେ, ସେ ତାଙ୍କର ସ୍ନେହାତୁରକ୍ତ ମୁହଁଟିମାନଙ୍କୁ ଅନେଇ ଆହୁରି ତନ୍ମୟ ହୋଇ ପଡ଼ିଲା । କରୁଣା ଓ ମମତାରେ ତାର ହୃଦୟ ହୁରୁହୁରୁ ହୋଇ ଉଠିଲା । ସେ ଲଇଁପଡ଼ି ଦିଟା ଯାକ ବାଛୁରୀଙ୍କର ଲାଲ ସରସର ଥୋବଣି ତଳ ଦି ହାତରେ ଆଉଁସିବାକୁ ଲାଗିଲା । ଫଟୋଟିକୁ କାଖତଳେ ଜାକି ଧରିଲା ।

ଉମାର ଦେହସାରା ପୁନଃ ପୁନଃ ଉଲ୍ଲସିତ ହେଲା । ଚୀନାମାନେ ଆକାଶରେ ଉଡ଼ି ଉଡ଼ି ଯଦି ବୋମା ପକେଇବେ, ଏହିପରି କୋଟି କୋଟି ନିରୀହ ଜୀବ ଧୂଳି ହେଇଯିବେ ସିନା ! କାହିଁକି ? ଯେ ସୃଷ୍ଟି କରିପାରେ ନାହିଁ, ସେ ଧ୍ୱଂସ କରିବ କେଉଁ ଅଧିକାର ବଳରେ ? କିଏ ସହିବ ଏ କଥା ?

କୂଅମୂଳେ ଠିଆହୋଇ ବୋଉ ପାଟିକରି ଡାକିଲେ, ଉମା ! ଉମା !!

ଉମା ଫେରି ଆସିଲା । ବଦ୍ରୀନାଥ ବାବୁ କହିଲେ, କଂଗ୍ରେସ ଅଫିସରୁ ଜିପ୍ ଆସିଛି । ଯିବୁ ଯଦି ଯା । ଦେଖି ଶୁଣି ଚଳ ପ୍ରଚଳ ହେବୁ । କିଏ ନାରୀନେତ୍ରୀ ଆସିଛନ୍ତି ଯେ, ସଭା ହେଉଛି । ବିଭୁ ବାବୁ, ବିନାୟକ ବାବୁ ପୁଣି ଡାକରା ପଠାଇଛନ୍ତି । ଲୋକଙ୍କ ଭୁଣ୍ଡରେ କିନ୍ତୁ ବାଡ଼ ବତା ନାହିଁ, ଜାଗ୍ରତ !

ଉମା ଉଁ କି ଚୁଁ ନକରି ଲୁଗା ବଦଳାଇ ବାହାରିଲା ।

ଜିପ୍ ଡ୍ରାଇଭରର ଉମା ଦେବୀଙ୍କୁ ନେବାକୁ ଆସିଛୁ ବୋଲି ଭିକାରୀ ଯେତେବେଳେ ତାର କଥାବାର୍ତ୍ତାରୁ ଜାଣିଲା, ସେ ଡ୍ରାଇଭରକୁ ବିନମ୍ର ହୋଇ କହିଥିଲା, ବାବୁ ! ଉମାଦେବୀ ଘରୁ ବାହାରିଲା ବେଳକୁ ମୋତେ ଟିକିଏ କହି ଦେବେ । ତାଙ୍କୁ ଗୋଟିଏ ଖବର କହିବାର ଅଛି । ମୁଁ ଶତ୍ରୁ ନାହିଁ ।

ଡ୍ରାଇଭର ଭିକାରୀର କଥା ବେଶ୍ ଶୁଣି ପାରିଥିଲେ ମଧ୍ୟ ସେ ଅନୁସାରେ ଉମା ବାହାରିଲା ବେଳେ କହିଦେବ ବୋଲି ଭାବି ନଥିଲା । କିନ୍ତୁ ଉମା ଯେତେବେଳେ ଘରୁ ବାହାରିଲା, ଡ୍ରାଇଭରର ପାଟିରୁ ବାହାରି ପଡ଼ିଲା, ହେଇ ଆସିଗଲେ ।

ଭିକାରୀ ଉଠି ଠିଆହେଲା; ଉମା ଦରଜା ଡେଇଁ ଜିପ୍ ପାଖକୁ ଆସିବା କ୍ଷଣି ଲମ୍ବ ହୋଇ ଗୋଡ଼ତଳେ ପଡ଼ିଯାଇ, କଇଁ କଇଁ ହୋଇ କାନ୍ଦି ଉଠିଲା ।

ଉମା ଅବାକ୍ ହେଲା ! 'କି କାହିଁକି? କଣ ହେଇଚି ? ଉଠ୍, ଉଠ୍... ତୋ ଘର କେଉଁଠି ?' ଉମା ବ୍ୟଥିତ ଗଳାରେ ପଚାରିଲା ।

'ରାସ୍ତା କଡ଼ର ଭିକାରୀ ମା । ମୋର କେହି ନାହିଁ, ମୁଁ କାହାର କେହି ନୁହେଁ । ହେଲେ ଶୁଣିଛି ମା, ଆର ଦେଶର ଚେପ୍‌ଟା ନାକା ଡକେଇତମାନେ, ଏ ଦେଶର ଗାଁ ଗଣ୍ଡା ଲୁଟି ପକାଉଛନ୍ତି । ମୋ ଦେହରେ ବଳ ନାଇଁ ମା, ମୁଁ କିଛି କରି ପାରିବି ନାହିଁ । ଭଗବାନଙ୍କ ଠାରେ କି ଅପରାଧ କରି କେଜାଣି, ଦେହ ଖଣ୍ଡିଆ ପୋକଡ଼ା ହୋଇଗଲା । ହେଲେ ଦେଶ ଯେତେବେଳେ ଉଜୁଡ଼ି ପଡୁଛି, ଭବିଷ୍ୟତ ପାଇଁ ଆଉ କି କରିବାକୁ ପଇସା ସଞ୍ଚିବି, ଶତ୍ରୁ ନେଇଯିବେ । ତା ପୂର୍ବରୁ ତମେ ନିଅ ସେ ପଇସା— ଶତ୍ରୁ ସାଙ୍ଗରେ ଲଢ଼ିବାରେ ଖର୍ଚ୍ଚ କର ! ଯେଉଁ ଯୁବକମାନେ ଆମ ତରଫରୁ ଲଢ଼େଇ କରୁଛନ୍ତି, ତାଙ୍କ ପାଖକୁ ଶୀତ ଲୁଗା ପଠାଅ, ହାତ ହତିଆର ପଠାଅ । ଯେମିତି ଇଚ୍ଛା, ପଠେଇ ଦିଅ ମା !'

ଅସହାୟ ନିଃସ୍ୱ ନିରୀହ ଭାରତୀୟ ଭିକାରୀ ତାର ମସିଆ ଚିରା କନା କାନି ଗଣ୍ଠିରୁ ସାତଗୁଡ଼ିଆ ଗାଞ୍ଜିଆ ଫିଟେଇ ସତରଟି ଅଧୁଲି ବାହାର କଲା । ଶୀତ

ନାଇଁ, ଖରା ନାଇଁ, ବର୍ଷା ନାଇଁ ବର୍ଷ ବର୍ଷ ଧରି ଦୁଆର ଦୁଆର ବୁଲି ଯେତିକି ସଞ୍ଚୟ କରିଥିଲା, ବଢ଼େଇ ଦେଲା ଉମା ହାତକୁ ! ଉମାର ମନେହେଲା, ଏହିକ୍ଷଣି ତାର ଆୟୁଷ ହଜାରେ ଗୁଣ ବଢ଼ି ଯାଇଛି । ତାର ଦୁଇ ବାହୁରେ ସହସ୍ରେ ସିଂହର ବଳ ଯୁଟି ଯାଇଛି । ସେ ଆଉ ଚୀନ୍ ଆକ୍ରମଣକାରୀଙ୍କୁ କିଞ୍ଚିତ ମାତ୍ର ଡରିବ ନାହିଁ, ପୃଥିବୀର ଅନ୍ୟ ଯେ କୌଣସି ଆତତାୟୀ ଶକ୍ତିକୁ ମଧ୍ୟ ତାର ଆଉ ଭୟ କରିବାର କୌଣସି କାରଣ ନାହିଁ । କାରଣ ତା ଦେଶର ଶିଶୁ, ତା ଦେଶର କୁଷ୍ଠରୋଗୀ, ତା ଦେଶର ନିଃସ୍ୱ କାଙ୍ଗାଳ ଭିକାରୀ ମଧ୍ୟ ଜାତୀୟ ପ୍ରତିରକ୍ଷା ପାଇଁ ଆଜି ସଚେତ ହୋଇ ସାରିଛି । ସର୍ବସ୍ୱ ତ୍ୟାଗ କରିବା ଲାଗି ପ୍ରସ୍ତୁତ ହୋଇ ଯାଇଛି । କି ଭାଷାରେ କି ଭାବରେ ସେ ରାସ୍ତା କଡ଼ର ଭିକାରୀଟିକୁ କୃତଜ୍ଞତା ଜଣାଇବ ? ଉମା କିଛି ଭାବି ନ ପାରି କହିଲା, ଦେଶପାଇଁ ପବିତ୍ର କର୍ତ୍ତବ୍ୟ କରି ତମେ ଧନ୍ୟ ହୋଇଛ ବୁଢ଼ା । ତମେ ଯେଉଁ ଦେଶରେ ଜନ୍ମ ହୋଇଛ, ସେଇ ଦେଶରେ ଭଗବାନ ମୋତେ ଜନ୍ମ ଦେଇ ଥିବାରୁ ତାଙ୍କୁ ମୋର ଲକ୍ଷେ ଧନ୍ୟବାଦ । ବର୍ତ୍ତମାନ ମୁଁ କଂଗ୍ରେସ ଅଫିସ ଆଡ଼େ ଚାଲି ଯାଉଛି । ତମେ ଆଉ କେତେବେଳେ ଠିକଏ ଆସ । ଆସି ପାରିବ ?

'ଆସିବି ମା ! ତୁମେ ଯାହା କହିବ, କରିବି !'

ଆନନ୍ଦରେ, ଗର୍ବ ଓ ଗୌରବରେ ଉମାର ମୁଖମଣ୍ଡଳ ଲାଲ୍ ଟହ ଟହ ଦିଶିଲା । ସେ ଭିକାରୀ ଆଡ଼କୁ ସ୍ନେହପୂର୍ଣ୍ଣ ଦୃଷ୍ଟି ପକେଇ ଗାଡ଼ିରେ ବସିଲା ।

'ଚାଲ୍ ।'

ଡ୍ରାଇଭର ଗାଡ଼ି ଚଳେଇଲା । ବାର ମିନିଟ୍ ଭିତରେ ସେମାନେ କଂଗ୍ରେସ ଅଫିସ ହୋତା ଭିତରେ ପହଞ୍ଚି ଗଲେ । ମନେ ହେଉଥିଲା, କଂଗ୍ରେସ ଅଫିସଟା ଆଜି ଯେମିତି କି ଗହଳ ଚହଳରେ ଫାଟି ପଡ଼ିବ । ସହରସାକର ମାଇକିନା ଜମା ହୋଇଯାଇଛନ୍ତି ନା କଣ ! ଜୟପୁର ସହରରେ ମିଟିଂ ହେଲେ, ଖୋଦ୍ ମାଇକିନାଙ୍କ ମିଟିଂ ହେଲେ ବି କେବେ ଏତେ ସ୍ତ୍ରୀ ଲୋକ ଜମା ହେଉଥିଲେ ଯେ ? ଥରକ ପାଖକୁ ଦଶଥର ଡାକ୍ ନ ପଠେଇଲେ ଘରୁ ବାହାରିବା ଯେଉଁମାନଙ୍କ ପକ୍ଷେ ବଡ଼ କଷ୍ଟ ହୋଇ ପଡୁଥିଲା, ସେଇମାନେ ଆଜି ଆଗଭୁରା ଆସି ଦାଣ୍ଡେ ଦାଣ୍ଡେ ଠିଆ ହୋଇଛନ୍ତି । ଧନ୍ୟ ଚୀନ୍‌ବାଲେ, ତମ ଯୋଗୁଁ ଏ ଦେଶରେ ଏ ଯେଉଁ ହଇଚଇ ପଡ଼ିଚି, ଏ ଯେଉଁ ଜାଗରଣ ଦେଖା ଦେଇଛି, ଏ ଯେଉଁ ଏକତା

ପ୍ରତିଷ୍ଠିତ ହୋଇଛି, ତାର ପରୀକ୍ଷାନ୍ତର ନାହିଁ । ଇତିହାସ କହିବ, ଚୀନ୍ ଆକ୍ରମଣରେ ଜାଗ୍ରତ ଭାରତ କଣ ନ କରିଛି ? କଣ ନ କରି ପାରେ ?

କଂଗ୍ରେସ ଅଫିସ ଭିତର ଓ ବାହାର ଖାଲି ମାଇକନିଆ ହାଉଜାଉ । ମଞ୍ଜୁମାଳା ସୁନ୍ଦର ଖଦଡ଼ ଶାଢ଼ୀଟିଏ ପିନ୍ଧି ଲସର ପସର ହେଉଛି । ଯତନ କରି ଗୋରି ଦେହରେ କଳା ରଙ୍ଗର ଧଳା ଗାର ପଡ଼ା କାଞ୍ଚୁଲିଟି ଖୁନ୍ଦି ଦେଲି ପରି ଦିଶୁଛି । କଂଗ୍ରେସ ଅଫିସର ପୁରୁଣା କର୍ମୀ ହିସାବରେ ସେ ସମବେତ ମହିଳାମାନଙ୍କର ତତ୍ତ୍ୱ ନେଉଛି । ହାତଯୋଡ଼ି ପ୍ରଣାମ କରୁଛି । ଦୁଇ ହାତ ପ୍ରସାରି ଆସନ ଦେଖାଇ ଦେଉଛି । ସତେ ଯେମିତି ନମ୍ରତାର ଜୀବନ୍ତ ଅବତାର ! ଜଣ୍ଟି ଅଗଣାରେ ଠିଆ ହେଉ ହେଉ ମଞ୍ଜୁମାଳା ଝପଟି ଆସିଲା । ଉମା ଗାଡ଼ିରୁ ଓଲ୍ହେଇଛି କି ନାହିଁ, ପ୍ରେମରେ ଗଦ୍‌ଗଦ୍ ହୋଇ ସେ ତାକୁ ପୋଟାଳି ପକାଇଲା । ଗଦ୍‌ଗଦ୍ ଭାବରେ କହିଲା, ତମେ ନ ଆସିଥିଲେ ଆଜିର ଆୟୋଜନ ଖଣ୍ଡିଆ ଲାଗିଥାନ୍ତା । ଆସିଗଲ, ଖୁବ୍ ଭଲ କଲ ।

ମଞ୍ଜୁମାଳା ଉମାକୁ ଟାଣି ଟାଣି ନେଇଗଲା ମୁଖ୍ୟ ଅତିଥି ଶ୍ରୀମତୀ ଦେଶାଇଙ୍କ ନିକଟକୁ । ପରିଚୟ କରେଇ ଦେଲା । ତାଙ୍କ ପାଖରେ ବସିଥିଲେ, ଉତ୍କଳ ପ୍ରାନ୍ତୀୟ ମହିଳା କଂଗ୍ରେସର ଅନ୍ୟତମା ମୁଖ୍ୟା କୁମାରୀ ମେନକା । ଉତ୍କଳ କଂଗ୍ରେସ ସଭାପତିଙ୍କ ନିର୍ଦ୍ଦେଶରେ ସେ ଶ୍ରୀମତୀ ଦେଶାଇଙ୍କ ସହ ବୁଲୁଛନ୍ତି । ତାଙ୍କର ମୁହଁକୁ ଅନେଇ ମଞ୍ଜୁମାଳା ଉମାର ପରିଚୟ ଦେବାକୁ ଯାଇ କହିଲା, ଏ ହେଉଛନ୍ତି ଉମାଦେବୀ ! ଜୟପୁରର ନୂତନ କଂଗ୍ରେସ କର୍ମୀ ! ପ୍ରତିରକ୍ଷା ସମ୍ପର୍କରେ ଖୁବ୍ କାମ କରୁଛନ୍ତି ।

ଆଉ କିଛି ସେ କହିଲା ନାହିଁ । ଅହଂକାର ତାର ତୋଣ୍ଟି ଚିପି ଧରିଲା । ଶ୍ରୀମତୀ ଦେଶାଇ ହସି ହସି ଇଂରାଜୀରେ କହିଲେ, 'ଓଃ ଉମାଦେବୀ ! ନାଁ ଶୁଣିଛି । ମିଷ୍ଟର ବିଭୂ ଭୂଷଣ ମୋତେ କହିଥିଲେ । ପ୍ରକୃତରେ ତୁମକୁ ଦେଖି ମୁଁ ବଡ଼ ଖୁସି ହେଲି, କୁମାରୀ ଉମାଦେବୀ ! ମୁଁ ଜାଣେ, ଓଡ଼ିଶାର ଭାଗ୍ୟ ବର୍ତ୍ତମାନ ଯୁବଶକ୍ତି ଦ୍ୱାରା ପରିଚାଳିତ ହେଉଛି । ଓଡ଼ିଶାର ଯୁବଶକ୍ତି ଜାଗ୍ରତ ହେଇଛି । ତୁମ ଭଳି ଯୁବତୀଙ୍କ ଠାରୁ ଭାରତ ବହୁ କାର୍ଯ୍ୟ ଆଶା କରୁଛି । ତୁମେ ଅଗ୍ରସର ହୁଅ ।'

ଉମା ଉତ୍ସାହିତ ହେଲା । ତାର ମନେହେଲା, ଶ୍ରୀମତୀ ଦେଶାଇ ତାର ନିଜ ଲୋକ, ବନ୍ଧୁ ବାନ୍ଧବ ଓ ତା ସହିତ ତାଙ୍କର ଅନେକ ଦିନୁ ପରିଚୟ ଅଛି । ସେ ଅକୁଣ୍ଠିତ ଚିତ୍ତରେ ଶ୍ରୀମତୀ ଦେଶାଇଙ୍କ ସହ କଥାବାର୍ତ୍ତା କଲା ।

ଶ୍ରୀମତୀ ଦେଶାଇ ଦିଲ୍ଲୀରୁ ଆସିଛନ୍ତି । ଅନେକ ଦିନ ହେଲା ନିଖିଳ ଭାରତ କଂଗ୍ରେସ କମିଟି ମହିଳା ବିଭାଗ ପରିଚାଳନା କାର୍ଯ୍ୟରେ ଅଂଶ ଗ୍ରହଣ କରୁଛନ୍ତି । ନାନା ଦେଶ ବୁଲିଛନ୍ତି । ପୃଥିବୀର ବହୁ ବିଖ୍ୟାତ ଲୋକଙ୍କ ସହିତ ତାଙ୍କର ସମ୍ପର୍କ ରହିଛି । ଯଦି ସେ ଚାହିଁବେ, ବହୁ ଅସାଧ୍ୟ କଥାକୁ ସହଜ କରିଦେଇ ପାରିବେ । ଉମା ମୁହୂର୍ତ୍ତେ କଥାବାର୍ତ୍ତା କଲାପରେ ତାଙ୍କର ଅସୀମ ଶକ୍ତିର ପରିଚୟ ପାଇ ବିସ୍ମିତ ହେଲା । ତା ମନରେ ଧିରେ ଧିରେ ପ୍ରଶ୍ନ ଉଠିଲା, ଏ ପ୍ରକାର ଅସାଧାରଣ ଶକ୍ତି ସମସ୍ତଙ୍କଠାରେ ଥାଏ, ନା ଏପରି ଜଣେ ଜଣେ କେବଳ ସେ ମହାନ୍ ଶକ୍ତିର ଅଧିକାରିଣୀ ଅଟନ୍ତି ?

ମଞ୍ଜୁମାଳା ସେମାନଙ୍କର ସହିତ ଆଳାପ ଆଲୋଚନାରେ ଯୋଗ ଦେବାକୁ ଚେଷ୍ଟା କଲା । ମଝି ମଝିରେ ଆଲୋଚ୍ୟ ବିଷୟରେ ନିଜର ମତାମତ ଏମାନଙ୍କ ଉପରେ ଲଦି ଦେବାକୁ ପ୍ରବଳ ଉଦ୍ୟମ ଚଳେଇଲା । କିନ୍ତୁ ହାୟ ! ତାର କୌଣସି କଥାର ଗୁରୁତ୍ୱ କେହି ଅନୁଭବ କଲେନାହିଁ । ତାର ସବୁ କଥା ଖାପ୍‌ଛଡ଼ା, ଦୁର୍ବଳ ପ୍ରତିପାଦିତ ହେଲା । ଶେଷରେ ଈର୍ଷାରେ ଜଳିପୋଡ଼ି ସେ ସେଠାରୁ ଚାଲି ଆସିଲା । ଜନ ସମାଗମ ଭିତରେ ନିଜକୁ, ନିଜର ଅସ୍ତିତ୍ୱକୁ ହଜେଇ, ଆପଣାର ଉପସ୍ଥିତିକୁ ନିଶ୍ଚିହ୍ନ କରିଦେବା ପାଇଁ ଚେଷ୍ଟାକଲା ।

କଂଗ୍ରେସ ସଭାପତି ଆସିଲେ, ମୁନିସିପାଲିଟି ଚେୟାରମେନ୍ ଆସିଲେ, ବିଭୁ ବାବୁ, ଜିଲ୍ଲା ପରିଷଦ ଚେୟାରମେନ୍ ଓ ସହରର ବହୁ ବଡ଼ ବଡ଼ ଲୋକ ଆସିଲେ । ଶ୍ରୀମତୀ ଦେଶାଇଙ୍କ ଉକ୍ତିକୁ କେନ୍ଦ୍ର କରି ଜାତୀୟ ପ୍ରତିରକ୍ଷା କାର୍ଯ୍ୟରେ ମହିଳାମାନଙ୍କର ଭୂମିକା ସମ୍ପର୍କରେ ଆଲୋଚନା ଚାଲିଲା । ପ୍ରସଙ୍ଗକ୍ରମେ ଦେଶାଇ କହିଲେ, ଏହା ହେଉଛି ଏକ ପରମ ସତ୍ୟ ଯେ, ଯେଉଁମାନେ ସୃଷ୍ଟିର ଚିରନ୍ତନ ଗତି ଧାରାକୁ ଠିକ୍‌ରୂପେ ବୁଝି, ଜୀବନ ବିନମୟରେ ଭାରତର ପ୍ରତିରକ୍ଷା ଉଦ୍ୟମକୁ ସଫଳ କରିବା ପାଇଁ ଯତ୍ନ କରିବେ, ସେମାନଙ୍କ ଉଦ୍ୟମ କେବଳ ଜାତୀୟ ଉଦ୍ୟମ ନୁହେଁ, ତାହା ଅଖଣ୍ଡ ମାନବ ଜାତିର ମଙ୍ଗଳ ବିଧାନ ଲାଗି ଏକ ସାଫଲ୍ୟମଣ୍ଡିତ ଉଦ୍ୟମର ରୂପ ଲାଭ କରିବ ।

ଆହୁରି କେତେ କଥା ପଡ଼ିଥିଲା । ହେମ ଆସି ଖବର ଦେଲା, ସଭା ସମୟ ହୋଇଗଲା । ଚାଲନ୍ତୁ ।

ସଭା ଆରମ୍ଭ ହେଲା । ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁସାରେ ସଭାନେତୃତ୍ୱ କଲେ ଉତ୍କଳ କଂଗ୍ରେସର ଅନ୍ୟତମା ମୁଖ୍ୟା କୁମାରୀ ମେନକା ।

'ବର୍ତ୍ତମାନ ମହିଳା କଂଗ୍ରେସ, ମହିଳା ପ୍ରତିରକ୍ଷା ପରିଷଦ ଓ ଉପସ୍ଥିତ ମହିଳାମାନଙ୍କ ତରଫରୁ ଆଜିର ମୁଖ୍ୟ ଅତିଥି ଶ୍ରୀମତୀ ଦେଶାଇଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇବେ କୁମାରୀ ଉମାଦେବୀ !' ସଭାନେତ୍ରୀ ଘୋଷଣା କଲେ ।

ଉମା ଭାଷଣ ଦେବ ! ଏକ ଅପ୍ରତ୍ୟାଶିତ ନୀରବତାରେ ସଭାସ୍ଥଳ ସ୍ତବ୍ଧ ହୋଇପଡ଼ିଲା । ଆଗ୍ରହରେ, ଆଶଙ୍କାରେ, ଘୃଣାରେ ଓ କ୍ରୋଧରେ ଅନେକ ତରୁଣୀ ଅନେଇ ରହିଲେ ଉମାର ମୁଖ ମଣ୍ଡଳକୁ ।

ଉମା ସାମାନ୍ୟ ବିଚଳିତ ହେଲି । କୁମାରୀ ମେନକାଙ୍କ ନିକଟକୁ ଯାଇ ଅନୁନୟପୂର୍ଣ୍ଣ କଣ୍ଠରେ କହିଲା, ମୋତେ କ୍ଷମା କରନ୍ତୁ । ଭାଷଣ ଦେବାର ଅଭ୍ୟାସ ନାହିଁ । ମୋତେ ପୂର୍ବରୁ କୁହାଯାଇ ନାହିଁ ମଧ୍ୟ । ମୁଁ ପାରିବି ନାହିଁ ।

ଶ୍ରୀମତୀ ଦେଶାଇ ପ୍ରତିବାଦ କଲେ । ବିଭୂଭୂଷଣ ବାଧା ଦେଲେ । ଜିଲ୍ଲା କଂଗ୍ରେସ ସଭାପତି କହିଲେ, ଉମା ହିଁ ସ୍ୱାଗତ ଜଣାଇ ଭାଷଣ ଦିଅନ୍ତୁ । ଆଗରୁ ଜାଣିଲେ ହୁଏତ ସେ ଏଠାକୁ ଆସି ନ ପାରନ୍ତି ବୋଲି ଏ କଥା ତାଙ୍କୁ କୁହାଯାଇ ନଥିଲା ।

ଉମା ମନେ ମନେ ଭଗବାନଙ୍କୁ ଡାକିଲା— ଭଗବାନ ! କୁହ, କୁହାଅ ମୁଁ କଣ କହିବି । ମୋର କିଛି କହିବାର ନାହିଁ । ଉପସ୍ଥିତ ନାରୀ ସମାଜକୁ ସୃଷ୍ଟିର ହିତ ଦୃଷ୍ଟିରୁ ଯାହା କହିବା ପ୍ରୟୋଜନ ମନେ କରୁଛ, ମୋର କଣ୍ଠ, ଭାଷା ଜରିଆରେ ତାହା ପ୍ରକାଶ କର !

ଉମା ମାଇକ ମୁହଁରେ ଠିଆ ହୋଇ ଆଖିବୁଜି ଧ୍ୟାନମଗ୍ନ ହେଲି । ଅଧ ମିନିଟ୍ ପରେ ଆଖିଖୋଲି ଗୁରୁଗମ୍ଭୀର କଣ୍ଠରେ ସ୍ୱାଗତ ସମ୍ଭାଷଣ ଆରମ୍ଭ କଲି । ଶ୍ରୀମତୀ ଦେଶାଇଙ୍କ ଗୁଣ ଗାନ, ଅନୁଷ୍ଠାନର ଗୁଣ କୀର୍ତ୍ତନ, ସମ୍ବର୍ଦ୍ଧନା ଜ୍ଞାପନ ଇତ୍ୟାଦି ଧରାବନ୍ଧା ସୂତ୍ର ସ୍ତବ କରିସାରି ସେ ଉପସ୍ଥିତା ମହିଳାମାନଙ୍କୁ ସଶ୍ରଦ୍ଧ ଦୃଷ୍ଟିରେ ଚାହିଁ ନମ୍ର କଣ୍ଠରେ କହିଲା, ଏ ଶୁଭ ଅବସରରେ ମୁଁ ଉପସ୍ଥିତା ମା ଭଉଣୀମାନଙ୍କୁ ନିବେଦନ କରୁଚି, ଶ୍ରୀମତୀ ଦେଶାଇଙ୍କ ଭଳି ଜଣେ ମହୀୟସି ମହିଳାଙ୍କୁ କାର୍ଯ୍ୟତଃ ଆମେ କି ଭଳି ସମ୍ବର୍ଦ୍ଧନା ଜଣାଇବା ସମସ୍ତେ ଭାବି ଠିକ୍ କରନ୍ତୁ । ଉପସ୍ଥିତ କ୍ଷେତ୍ରରେ ଆମେ ଆମକୁ ପଚାରିବା ଉଚିତ୍ ଯେ, ଆମେ ଆମ ଦେଶର ପ୍ରାଣପ୍ରିୟ ସ୍ୱାଧୀନତାକୁ ରକ୍ଷା କରିବା କି ନାହିଁ ? ଆମେ ମଣିଷମାନେ ଭଗବାନଙ୍କ ଠାରୁ ଯେଉଁ ମହାନ୍ ଆଶୀର୍ବାଦ ନେଇ ପୃଥିବୀରେ ଜନ୍ମଲାଭ କରିଅଛେ, ବ୍ୟକ୍ତିଗତ ସ୍ୱାଧୀନତା ପ୍ରଭୃତି କେତେକ ଜନ୍ମଗତ ବିଶେଷ

ହକ୍ ନେଇ ଜନ୍ମ ହୋଇଚେ, ସେ ଦୁର୍ଲ୍ଲଭ ସୌଭାଗ୍ୟ ସମାହାରକୁ ଆମେ ଚିର ନଜର କରି ବ୍ୟବହାର କରିବା ଲାଗି ନିଜ ନିଜକୁ ନିତ୍ୟସମର୍ଥ କରି ରଖିବା ନା ଇତର ସ୍ୱଭାବ-ନଷ୍ଟ ଅନ୍ୟ ଏକ ଜାତି, ଏ ପୃଥିବୀରେ କାଳଚକ୍ର ପ୍ରଭାବରେ ଗଢ଼ି ଉଠୁଥିବା ଏକ ଦସ୍ୟୁ ଗୋଷ୍ଠୀର ଗୋଲାମ ହେବା ? ଅଶୋକ ବନର ବନ୍ଦିନୀ ସୀତା ଯେ ନିଷ୍କଳଙ୍କ ଆତ୍ମାର ଆନ୍ତରିକ ଇଚ୍ଛା ବଳରେ ମହାପ୍ରତାପୀ ରାବଣର ସ୍ୱର୍ଣ୍ଣ ଲଙ୍କାକୁ ଧ୍ୱଂସ କରେଇ ଦେଇପାରେ, ଏ କଥା ସମସ୍ତଙ୍କୁ ଜଣା । କିନ୍ତୁ ଆଧୁନିକ ଭାରତର ନାରୀ ସୀତାର ଦୁଃଖ ବରଣ କରିବାକୁ ପ୍ରସ୍ତୁତ କି ? କଥାରେ ସନ୍ତୁଷ୍ଟ କରିବାର ବେଳ ଆଉ ନାହିଁ । ଶ୍ରୀମତୀ ଦେଶାଇଙ୍କୁ କାର୍ଯ୍ୟତଃ ଏ ପ୍ରଶ୍ନର ଉତ୍ତର ଦେଇ ପାରିଲେ ହିଁ ଆମେ ତାଙ୍କ ପରି ଆଦର୍ଶ ନାରୀମାନଙ୍କୁ ଯୋଗ୍ୟ ସମ୍ବର୍ଦ୍ଧନା ଜଣାଇ ପାରିବା ବୋଲି ମୋର ବିଶ୍ୱାସ ।

ସଭାସ୍ଥଳ ଆତୁର ନିସ୍ତବ୍ଧ ହୋଇଗଲା । ଉମାର ଏହି ଅଗ୍ନିଗର୍ଭର ପ୍ରଶ୍ନ ପ୍ରତ୍ୟେକ ନାରୀ, ପ୍ରତ୍ୟେକ ଝିଅଙ୍କ ମନ, ହୃଦୟ ଭିତରଟାକୁ ଗଭୀର କରି କୋରି ପକେଇଲା । ସମସ୍ତେ ନୀରବରେ ମୁହଁ ତଳକୁ କଲେ । ମଞ୍ଜୁମାଳାର ଆଖିରୁ ଲୁହ ଝରି ପଡ଼ିଲା । ଲୋମ ଟାଙ୍କୁରି ଉଠିଲା ।

'... ମୁଁ ଜାଣେ ମୋ ଦେଶର ରମଣୀମାନେ, ବୀରାଙ୍ଗନାମାନେ ଯେ କୌଣସି ବିପତ୍ତିରୁ ଦେଶକୁ ଅକ୍ଳେଶରେ ରକ୍ଷା କରି ପାରିବେ । କିନ୍ତୁ ଆମର ସାମାଜିକ ଜୀବନରେ ପରସ୍ପରପ୍ରତି ଈର୍ଷା, ଦ୍ୱେଷ ଭାବର ଯେଉଁ କୁଟିଳ ସ୍ପର୍ଶ ରହିଯାଇଛି, ତାର ମୂଳକୁ ନିଶ୍ଚିହ୍ନ କରିଦିବ କିପରି ? ଆମ ଭିତରୁ ଏ ଦୁର୍ଭାବନାକୁ ନିର୍ମୂଳ ନ କଲେ ଆମ ଭିତରୁ ଭେଦାଭେଦ ଦୂର ହୋଇ ପାରିବ ନାହିଁ । ତେଣୁ ଆଜି ମୁଁ କାନିପାରି, ତଳହାତ ହୋଇ ମାଗୁଛି, ଆମର ପ୍ରିୟ ମାତୃଭୂମିର ସମ୍ମାନ ରକ୍ଷାପାଇଁ ମୋର ନମସ୍ୟା ମା ମାନେ, ମୋର ସ୍ନେହର ଭଉଣୀମାନେ ଏତିକି ତ୍ୟାଗ କରନ୍ତୁ । ହାତପାନ୍ତି ନତମସ୍ତକ ହୋଇ ମାଗୁଛି, ଏ ଭେଦାଭେଦକୁ ମା ଭଉଣୀମାନେ ମୋ ମୁଣ୍ଡ ଉପରେ ଫୋପାଡ଼ ଦିଅନ୍ତୁ । ଏ ଜାତିକୁ ଏକଜୁଟ୍ କରନ୍ତୁ । ଆପଣା ଆପଣାକୁ ପ୍ରସ୍ତୁତ କରନ୍ତୁ ।'

ହେମ ଦୁଇ ପାପୁଲିରେ ମୁହଁ ଢାଙ୍କିଲା । କରତାଳି ଶବ୍ଦରେ ସଭାସ୍ଥଳ କମ୍ପମାନ ହେଲା । ଶ୍ରୀମତୀ ଦେଶାଇ ଓଡ଼ିଆ ଭାଷା ଭଲ ଜାଣି ନଥିଲେ ମଧ୍ୟ ଭାଷଣର ମର୍ମ ଉପଲବ୍ଧି କରି ଉତ୍ଫୁଲ୍ଲ ହୋଇ ଉଠୁଥିଲେ । କଂଗ୍ରେସ ସଭାପତି ବିଭୁ ବାବୁଙ୍କ ମୁହଁକୁ ଅନେଇ ମୁରୁ ମୁରୁ ହସିଲେ । ଉମା ଏଥର ତା ଭାଷଣରେ

ଅତୀତ ଭାରତର ବୀରାଙ୍ଗନାମାନଙ୍କ ଜୀବନର ରୋମାଞ୍ଚକର କାହାଣୀମାନ ଉଦ୍ଧାର କରି ପ୍ରତି ବାକ୍ୟରେ ଅଗ୍ନି ବର୍ଷଣ କଲି । ଶେଷରେ କହିଲି, ଆପଣମାନେ ହୁଏତ ଆମ ଦେଶର ବିପନ୍ନ ସୀମାନ୍ତ ଅଞ୍ଚଳ ଦେଖିନେ, ହିମାଳୟ ଦେଖିବାର ସୁଯୋଗ ପାଇନେ, କିନ୍ତୁ ମୁଁ ଅନୁରୋଧ କରିବି, ଆପଣମାନେ କଳ୍ପନା କରନ୍ତୁ— ନେଫା ଆଉ ଲଦାଖ୍‌ର ଯେଉଁ ଅଞ୍ଚଳ ଉପରେ ଚୀନ୍‌ର କ୍ଷୁଧିତ ସୈନ୍ୟମାନେ ଆକ୍ରମଣ କଲେ, ସେହି ଅଞ୍ଚଳ ହେଉଛି, ମନେ କରନ୍ତୁ ଜୟପୁର ଠାରୁ କୋରାପୁଟ ଯିବା ବାଟରେ ପଡୁଥିବା ବାଉନ୍‌ପୁଟ ଘାଟି ସେ ପଟରୁ ଠିକ ନାକ୍‌ଟିଡ଼ୋଙ୍ଗର ପାହାଡ଼ ଉପରକୁ ଶତ୍ରୁ ସୈନ୍ୟ ଉଠି ଆସିଲେଣି । ଧରାଯାଉ, ନାକ୍‌ଟିଡ଼ୋଙ୍ଗର ପାହାଡ଼ଟା ହିଁ ଏ ଜାତିର ଉନ୍ନତ ମସ୍ତକ ପରି ଠିଆ ହୋଇଛି । ତାର ତିନିଶହ ହାତ ଏ ପାଖରେ ଏକ ଭାରତୀୟ ଘାଟିରେ ପ୍ରବଳ ଯୁଦ୍ଧ ଚାଲିଛି ।'

ଉମା ଏଥର ପ୍ରବଳ ଆବେଗରେ କବିତା ଆଉକୁ, ମଞ୍ଜୁମାଳା ଆଉକୁ, ହେମ ଆଉକୁ ହାତ ଦେଖାଇ କହିଲା, ମନେ କରନ୍ତୁ— ଏଇ ମୋ ସାମନାରେ ଯେଉଁମାନେ ବସିଛନ୍ତି, ତାଙ୍କର ବଡ଼ ଭାଇ, ତାଙ୍କର ଅନ୍ତରଙ୍ଗ ବନ୍ଧୁ, ତାଙ୍କର ପ୍ରାଣପ୍ରିୟ ସ୍ୱାମୀ, ଭଣୋଇ, ଦାଦା, ଦଦେଇ, ମାମୁଁ, ଭଣଜା ମରଣ ମୁହଁକୁ ଛାତି ଦେଖାଇ ଦେଇ ସେହି ଘାଟି ଉପରେ ଲଢ଼େଇ କରୁଛନ୍ତି, ଜନ୍ମଭୂମିର ପ୍ରତି ଇଞ୍ଚ ମାଟି ରକ୍ଷା କରିବା ପାଇଁ ! ବରଫ ଉପରେ ଯୁଦ୍ଧ ଚାଲିଛି । ଯେଉଁଠି ହିମାଳୟର ହେମାଳ ପବନ ମଧ ପଥର ହୋଇ ଯାଉଛି, ସେଇଠି ସେମାନେ ଦିନ ରାତି ଉଜାଗର ହୋଇ ଯୁଦ୍ଧ କରୁଛନ୍ତି । ଏ ପରିସ୍ଥିତିରେ ପଡ଼ି ଆମେ, ସେମାନଙ୍କର ଯେଉଁ ଆତ୍ମୀୟମାନେ ଗାଁରେ, ସହରରେ ଘରେ ରହିଥିବା ସେ ସମସ୍ତଙ୍କର ମନ, ଆପଣମାନଙ୍କର ମନ କଣ ନ ହେଉଥିବ ଅନୁମାନ କରନ୍ତୁ । ଆଉ ମନେ ରଖନ୍ତୁ, ଆଜି ଆମ୍ଭମାନଙ୍କ ମୁଣ୍ଡ ଉପରେ ଠିକ୍ ଏହି ପରିସ୍ଥିତି, ଠିକ୍ ଏହି ଅବସ୍ଥା ଘୁରି ବୁଲୁଛି । କେତେବେଳେ ଯେ ତାହା ଆମ୍ଭମାନଙ୍କ ମୁଣ୍ଡରେ କୁଢ଼େଇ ହୋଇ ନ ପଡ଼ିବ, କହିହେବ ନାହିଁ । ତେଣୁ ଆଜି ଘରେ, ଦାଣ୍ଡରେ, ଦୋକାନରେ, ବଜାରରେ, ଗାଧୁଆ ତୁଠରେ, ବାରି ବଗିଚାରେ, କ୍ଷେତ ଖଳାରେ, କଳ କାରଖାନାରେ ସେପ୍ରେଇ ଶାଳରେ ଏ ଜାତିକୁ ପ୍ରସ୍ତୁତ କରି ରଖିବାକୁ ହେବ । ମହାଭାରତର ପ୍ରବଳ ସଂଗ୍ରାମ ପାଇଁ, ଧ୍ୱଂସ ମୁଖରୁ ପୃଥିବୀରେ ନ୍ୟାୟ ନୀତିକୁ, ସମଗ୍ର ମାନବିକତାର ଅଖଣ୍ଡ ପ୍ରକାଶକୁ, ନିଜକୁ, ନିଜର ପିଲାପିଲି, ସମ୍ପତ୍ତିବାଡ଼ି, ଜନ୍ମମାଟିର ପ୍ରତିଟି ଧୂଳିକଣାକୁ ରକ୍ଷା କରିବା ଲାଗି ଆଜି ସମସ୍ତଙ୍କୁ ଅଖିଆ ଅପିଆ ସଜାଗ ହୋଇ ରହିବାକୁ ପଡ଼ିବ ।'

ଘନ ଘନ କରତାଳ ପଡ଼ିଲା । ହେମର କୋମଳ କରପଲ୍ଲବ ଦୁଇଟି ମୁଠା ମୁଠା ହେବାକୁ ଲାଗିଲା, ବଜ୍ର-କଠିନ ଜଣା ପଡ଼ିଲା । ମନେ ମନେ ପ୍ରମାଦ ଗଣିଲା ମଞ୍ଜୁମାଳା । ଯଦି ଉମା ଏପରି ଉତ୍ତେଜିତ ହୋଇ ପଡ଼ୁଥିବ ଦଏ, କଏ କଏ ଯୁଦ୍ଧକୁ ଯିବେ ଏହିକ୍ଷଣି ନାମ ଦଅନ୍ତୁ— ମହା ଅସୁବିଧା ହେବ । କେମିତି ଗୋଟାଏ ଜକୁଆ ଭୟର ଶିହରି ଆକ୍ରମଣ ତାର ଆଖିତଳ ତାଳୁ ଭିତରକୁ ପଶିଗଲା । ସେ ମୁହଁ ତଳକୁ କଲା ।

ଉମା ବଜ୍ର ଗମ୍ଭୀର ସ୍ୱରରେ କହି ଚାଲିଥିଲା— ମୁଁ ଜାଣେ ଭାରତର ଅନ୍ୟ ପ୍ରାନ୍ତରର ନାରୀମାନଙ୍କ ପରି ଓଡ଼ିଶାର ନାରୀମାନେ ମଧ୍ୟ ଆଧ୍ୟାତ୍ମିକ ବିଚାର ଧାରା ଉପରେ ବିଶ୍ୱାସ କରନ୍ତି । ତେଣୁ ଏଠାରେ ମୁଁ ମନେ ପକାଇ ଦେବାକୁ ଚାହେଁ, ମହାଭାରତ ଯୁଦ୍ଧର କଥା, ଉଲ୍ଲେଖ କରିବାକୁ ଚାହେଁ, ଗୀତାର ମର୍ମବାଣୀ !’

ଗୀତାର ମର୍ମବାଣୀ ଓ ଇତିହାସରେ ନାରୀର ଭୂମିକା ବର୍ଣ୍ଣନା କରୁ କରୁ ଭାବବିହ୍ୱଳ ହୋଇ ଉମା ତାର ଭାଷଣ ଶେଷ କଲା ।

କବିତାର ହୃଦୟ ପୁଲକିତ ହୋଇ ଉଠିଲା । ପାନ ସାହିର ଦରଜି ଦୋକାନି ଶଙ୍କର ସଉଦାଗର ଭଉଣୀ କୁନ୍ଦନ ଅପା ପାଖରେ ବସିଥିଲା । ପାଟିରେ ପାଟିଏ ଛେପ ଅଳଜେଇ ମୁହଁ ଗୋଜିଆ କରି ଚାହିଁଲା କବିତାର ପ୍ରଫୁଲ୍ଲ ମୁଖ ମଣ୍ଡଳକୁ । କବିତା ହସିଦେଲା ।

‘ଭାରି ବଢ଼ିଆ କହୁଛନ୍ତି ।’ ଉଛୁଳି ଆସୁଥିବା ରକତିଆ ଛେପର ପ୍ରବାହକୁ ଉଗାଳୁ ଉଗାଳୁ କୁନ୍ଦନ କହିଲା ଟେଳେଇ ହୋଇ ।

‘ହେଲେ ଆମେ ସଭିଏ ଏ କଥାକୁ ମନେ ରଖିଲେ ତ ! ସଭାରୁ ଗଲାପରେ ଯେ ଯାହା ଘରେ ଲାଗି ପଡ଼ିବା ଯାହା ବାଜେ କାମରେ, ଲାଭ କଣ ?’ କବିତା ମୁହଁ ମୋଡ଼ିଲା ।

ଭାଷଣ ଶୁଣୁ ଶୁଣୁ ହେମର ମନ ହିମାଳୟ ପରି ସ୍ଥିର ଅଟଳ ହେବାକୁ ଲାଗିଲା । ସେ କବିତା ନିକଟକୁ ଘୁଞ୍ଚି ଆସି କହିଲା, ଯାହାହେଉ ଉମା ଅପା ଆଜ କମ୍ପେଇ ଦେଲା । କବିତା ପରମ ସନ୍ତୋଷ ପ୍ରକାଶ କରି କହିଲା, ମୁଁ ତ ମନେ ମନେ ପ୍ରତିଜ୍ଞା କରି ସାରିଲିଣି— ଆଜିଠାରୁ ପ୍ରତିରକ୍ଷା କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରି ଦେବି । ମୋଠୁଁ ଦେଶ ଯାହା ଚାହିଁବ— ବୁଦ୍ଧି, ବିଚାର, ଶକ୍ତି, ଦେହ, ଜୀବନ— ଯାହା ଦରକାର ହେବ ଦେବି ।’

ହେମ ଉତ୍ସାହିତ ହୋଇ କହିଲା, ହଁ କବିତା ନାନି, ମୁଁ ବି ସେଇଆ କହିବି । ଆମେ ଗରିବ, ଆମେ ଘର କୋଣର ବନ୍ଦିନୀ ଝିଅ, ଜୀବନରେ କେବେ ରୋଜଗାର କରିନେ । ଅନ୍ୟମାନଙ୍କ ପରି, ସରକାର ଓ ସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ବ୍ୟବସାୟୀରେ ଅଧିକ ଲାଭ ନିମନ୍ତେ ଉତ୍କୋଚ ଦେଲା ଭଳି ଏଠୁ ସେଠୁ ଯୋଗାଡ଼ି କରି ଗୁଳେ ଗୁଳେ ଟଙ୍କା କି ସୁନା ଆମେ ଦାନ ଦେଇ ପାରିବା ନାହିଁ । କୋଟିପତି ଦେଶଭକ୍ତ ଦେଖାଇ ପାଞ୍ଚ ପଚିଶି ହଜାର ଦାନ କଲା ଭଳି ଆମେ ନିଜକୁ, ନିଜ ଦେଶକୁ, କୋଟି କୋଟି ଆତ୍ମାର ଆକୁଳ ଆହ୍ୱାନକୁ ଠକି ପାରିବା ନାହିଁ । ଆମେ ଆମର ଯାହାଅଛି, ସର୍ବସ୍ୱ ଦେବା ।'

କବିତା ଦେଖିଲା, କେବଳ ସେ ଜଣେ ମାତ୍ର ନୁହେଁ, ସମସ୍ତ ଝିଅ ବୋହୂ ଉମାର ଭାଷଣରେ ଉଦ୍‌ବୁଦ୍ଧା ହୋଇ ଉଠିଛନ୍ତି । ସେ ଅତ୍ୟନ୍ତ ଉତ୍ସୁକ ହୋଇ କହିଲା, ହେମ, ଭଗବାନଙ୍କ ନାମରେ ଆମେ ଆମର ଆତ୍ମାର ପ୍ରବାହକୁ ଅଜାଡ଼ି ଦେବା ଦେଶମାତୃକାର ପ୍ରତିରକ୍ଷା କାର୍ଯ୍ୟରେ । ଦରକାର ହେଲେ ବନ୍ଧୁକ କାନ୍ଧେଇ ହିମାଳୟର ବକ୍ଷ ରକ୍ଷା କରିବା ।'

ଶ୍ରୀମତୀ ଦେଶାଇଙ୍କ ଉତ୍ତେଜନାମୟୀ ଉଦ୍‌ବୋଧନ ପରେ କୁମାରୀ ମେନକା ମଧ୍ୟ ଏକ ଚିତ୍ତାକର୍ଷକ ଭାଷଣ ଦେଲେ ।

ସଭା ଶେଷ ହେଲା ବିପୁଳ ଉତ୍ସାହ ଭିତରେ । ଶ୍ରୀମତୀ ଦେଶାଇ ଓ ମେନକାଙ୍କ ସହିତ ଉମା, କବିତା ହେମ ପ୍ରଭୃତି ଅନେକ ମହିଳା ରାତି ଏଗାରଟା ଯାଏ ଆଲୋଚନା ରତ ରହିଲେ ।

**ର**ବିବାର । ସାରା ଦିନର ନିତ୍ୟ ନୈମିତ୍ତିକ କାମ ଭିତରେ ତାଙ୍କର ବଡ଼ କାମ ହେଉଛି, ଦି ତିନି ଘଣ୍ଟା କଲେଜରେ କଟେଇବା, ଆଜି ସେତକ ମଧ୍ୟ ବନ୍ଦ । କବିତା ସକାଳ ପହରୁ ଉମା ସହିତ ଗଲାଣି । ଅଧ୍ୟାପକ ଗଡ଼ନାୟକ କପେ ବର୍ଣ୍ଣଭିଟା ଉଦରସ୍ଥ କରି ସାରି ଦୋ ମହଲାର ପିଣ୍ଡା ଉପରେ ବସି ବୋକାଙ୍କ ଭଳି ଗୁହାଁ ରହିଥିଲେ ବାହାରକୁ । ଅଦିନିଆ ବର୍ଷଣ ମେଘ ତଳେ ବତାସିଆ ପବନ ପିଟି ହେଉଥିଲା ।

ଠାକୁରାଣୀ ମନ୍ଦିର ସେ ପାଖ ଡେଙ୍ଗା ତେନ୍ତୁଳି ଗଛର ଉଞ୍ଚା ଡାଳରେ ବନ୍ଧା ହୋଇଥିବା ଅଧା ଚିରା ଲାଲ୍ ପତାକାଟି ବାତ୍ୟେଇ କରୁଣ ହେଉଥିଲା । ଅରକ୍ଷା, ନିଃସହାୟା, ରୁଗ୍ଣା ପ୍ରସୂତିର ଅସହ୍ୟ ବେଦନା ଦଗ୍ଧ ଦେହର କଙ୍କା ପ୍ରାସରେ ସତେ ଯେମିତି ଏ ପତାକାର ଶରୀର ଆଜ ବିଦୀର୍ଣ୍ଣ ହୋଇ ପଡ଼ୁଛି । ପତାକାର ଏହି ଦୁର୍ଦ୍ଦଶା ଗଡ଼ନାୟକଙ୍କ ମନରେ ନାନା ଭାବନାର ସ୍ରୋତ ଖେଳାଇ ଦେଲା ।

ଗଡ଼ନାୟକ ଯେତେବେଳେ ଗ୍ରାମ ୟୁନିୟନର ନେତୃତ୍ୱ ନେଇଥିଲେ, ମହିମାମୟ ହିମାଳୟର ଶାନ୍ତ କୋଳରେ ରଣ ଦୁନ୍ଦୁଭି ବାଜ ନଥିଲା । ଭାରତର ଉତ୍ତର ସୀମାନ୍ତ ନେଫା ଆଉ ଲଦାଖ୍ ସେ ପାଖରେ ଲାଲ୍ ଚୀନ୍‌ର ଦୁର୍ଦ୍ଦାନ୍ତ ଦସ୍ୟୁ-ସେନା ଅବାଧ ବିଚରଣ କରୁଥିଲେ । ସଦ୍ୟ ସ୍ୱାଧୀନ ଭାରତୀୟମାନଙ୍କର ଲକ୍ଷ୍ୟ ଥିଲା, ମାନବିକତାର ସ୍ୱାଭାବିକ ବିକାଶ । ଦେଶ ତମାମ୍ ଗାଁ ଗାଁରେ ନୂତନ ଜାଗୃତି ସୃଷ୍ଟି କରିଥିଲା, ଯୋଜନାର ସ୍ୱପ୍ନବିହ୍ୱଳ ଡାକରା । ସମାଜ ସେବକମାନଙ୍କର ଉଦାର କ୍ରିୟା କଳାପର ଉଦ୍ଦେଶ୍ୟ ଥିଲା, ସୁସ୍ଥ ସମାଜ ନିର୍ମାଣ ! ଜୀର୍ଣ୍ଣ, ଶୀର୍ଣ୍ଣ ମଣିଷ ସମାଜରୁ ଦାରିଦ୍ର୍ୟ, ଦୈନ୍ୟ, ଶୋଷଣ, ଅନାଚାର ଓ ଅତ୍ୟାଚାରକୁ ଚିର ନିର୍ମୂଳ କରିଦେବା ଥିଲା, କର୍ମ ମୁଖର ଭାରତୀୟ ପଞ୍ଚବାର୍ଷିକ ଯୋଜନାଗୁଡ଼ିକର ମୂଳ ମନ୍ତ୍ର । ସେତେବେଳେ ସେ ଲକ୍ଷ୍ୟ କରିଥିଲେ, ଜାତୀୟ ଜୀବନର ଭିତରେ ଓ ବାହାରେ ଦୁଇଟି ଦୁଷ୍ଟ ଗୋଷ୍ଠୀ ଗଢ଼ି ଉଠୁଛନ୍ତି ଏବଂ ଆମ ଦେଶର ସ୍ୱଭାବ ସୁଲଭ ଉଦାରତା, ସହିଷ୍ଣୁତା ତାଙ୍କୁ ପୁଷ୍ଟ କରୁଛି, ଦୀର୍ଘଜୀବି କରୁଛି । ଅନେକ ସମୟରେ 'ହିନ୍ଦ୍ ଚୀନ ଭାଇ ଭାଇ' ଧ୍ୱନି ଭିତରେ ଅସ୍ଥିରତାର ପୀଡ଼ନ ତାଙ୍କୁ ବ୍ୟସ୍ତ କରି ଦେଉଥିଲା । ସେ ଦେଖୁଥିଲେ, ଦେଶର ଶାନ୍ତି-ପାଗଳ, ପ୍ରଗତି ପାଗଳ ଜନତାର କର୍ମ-କୋଳାହଳ ମଧ୍ୟରେ ଆପଣା କୁଟୁମ୍ବର କେତେଜଣ ବୁଦ୍ଧି ଭ୍ରଷ୍ଟ ଲୋକ ମଧ୍ୟ ଅବିଚ୍ଛିନ୍ନ ଭାବରେ ଜାତୀୟ ଅଗ୍ରଗତିକୁ ବିପନ୍ନ କରୁଛନ୍ତି । ମାନବିକତାର ସ୍ୱତନ୍ତ୍ର ବିକାଶ ଧାରା ଆଗରେ ପ୍ରତିବନ୍ଧକ ହୋଇ ଠିଆ ହେଉଛନ୍ତି । ସେମାନେ ଉଗ୍ର ପ୍ରଗତିବାଦୀ କମ୍ୟୁନିଷ୍ଟ ପାର୍ଟିର ଲୋକ ହୁଅନ୍ତୁ କି ବ୍ୟର୍ଥ ମନୋରଥ କ୍ଷମତାସୀନ କଂଗ୍ରେସ ଦଳର ନେତା ହୁଅନ୍ତୁ, ସେମାନେ ପୃଥିବୀର ସର୍ବତ୍ର ଦେଖା ଯାଉଥିବା ଏକ ପ୍ରକାର ସଭ୍ୟ ଶିକ୍ଷିତ ଦୁଷ୍ଟ ପ୍ରକୃତିର ମଣିଷ । ହିଏତ ସେମାନେ ହିଁ ଦସ୍ୟୁ ମନୋଭାବାପନ୍ନ ଆକ୍ରମଣକାରୀ କମ୍ୟୁନିଷ୍ଟ ଚୀନ୍‌ର ଦଲାଲ୍ କିମ୍ବା ସେହି ଧରଣର ଦେଶଦ୍ରୋହୀ, ସମାଜ ଦ୍ରୋହୀଙ୍କ ସମର୍ଥନକାରୀ ଭାବେ ଅଖ୍ୟାତ ଅବାଞ୍ଛିତ ମଣିଷ ।

ଆଜି ତଳ ଧନର ବହୁ ଘଟଣାକୁ ମନେ ପକାଇ ଗଡ଼ନାୟକ ବ୍ୟଥିତ ମନରେ ଭାବିବାକୁ ଲାଗିଲେ, ମଣିଷ ଏପରି ପରଶ୍ରୀକାତର ହୁଏ କାହିଁକି ? କଣ ଏମାନଙ୍କର କାମନା ? ଜନ ଅସନ୍ତୁଷ୍ଟି ସୃଷ୍ଟି ? ଅର୍ଥ ? କ୍ଷମତା ଲାଳସା ? ସକ୍ଷମ, ସଫଳ କାମ ଇତର ମଣିଷମାନଙ୍କ ନୈତିକ ପତନ ? ନା କେବଳ ଦୁଷ୍ଟାମି ?

ରତ୍ନଖଚିତ ଭବିଷ୍ୟତ ଭାରତର ମଧୁମୟ ଆକର୍ଷଣରେ କର୍ତ୍ତବ୍ୟବହ୍ୱଳ ଜନ ଜୀବନ ଯେତେବେଳେ ଗୋଟିଏ ପରେ ଗୋଟିଏ ଅଗ୍ରଗତିର ସୋପାନ ଆରୋହଣ କରି ଚାଲିଥିଲା, ନଗଣ୍ୟ ହେଁସ୍ତ ଘୃଣ୍ୟ ଏହି ଭଣ୍ଡମାନଙ୍କର ଭଣ୍ଡାମି ଆଡ଼କୁ ସତର୍କ ଦୃଷ୍ଟି ଦେବା ପାଇଁ କାହାର ବେଳଥିଲା ? ଏ ସୁବିଧା ସୁଯୋଗ ନେଇ ଦେଶ ଭିତରେ ଓ ବାହାରେ ଏହି ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଛୁରୀ ପଜାଉଥିଲେ ।

ଭାବୁ ଭାବୁ ଗଡ଼ନାୟକଙ୍କ ମନ ଚୈତନ୍ୟ ଉତ୍ତେଜିତ ହୋଇ ଉଠିଲା । ସେ ଏ ସମସ୍ୟାର ପ୍ରତିକାର ଚିନ୍ତାରେ ନିମଗ୍ନ ହେଲେ ।

ଅଧ୍ୟାପକ ଗଡ଼ନାୟକ ଆଧୁନିକ ସ୍ୱାଧୀନ ଭାରତର ଫଳିତସମ୍ପନ୍ନ ଯୁବକ । ତାଙ୍କ ଜୀବନର ପରମ ଦାବୀ ଓ ଲକ୍ଷ୍ୟ ହେଉଛି, ମଣିଷ ମଣିଷ ହେଉ । ତା ପରେ ଦେବତ୍ୱର ସକଳ ସମ୍ଭାବନାକୁ ମଣିଷର ସୌଭାଗ୍ୟରେ ପରିଣତ କରୁ । ତେଣୁ ଦେଶ ଭିତରେ ଓ ବାହାରେ ଧର୍ମଦ୍ରୋହୀ, ରାଷ୍ଟ୍ରଦ୍ରୋହୀ ନର-ରାକ୍ଷସମାନଙ୍କର ଦାୟିତ୍ୱହୀନ ଆଡ଼ମ୍ବରା ତାଙ୍କୁ ବିଚଳିତ, ବ୍ୟଥିତ କରି ଦେଉଥିଲା । ନିଜେ ଶାସକ ହେବେ କି ଶାସକ ଗୋଷ୍ଠୀକୁ ପ୍ରଭାବିତ କରି ତଥାକଥିତ ପ୍ରତିପତ୍ତି, ଐଶ୍ୱର୍ଯ୍ୟ, ପ୍ରତିଷ୍ଠା ଲାଭ କରିବେ, ଏ ଚିନ୍ତା ତାଙ୍କ ମନକୁ କେବେହେଲେ ସ୍ପର୍ଶ କରିନାହିଁ । ଶାନ୍ତଶିଷ୍ଟ ବୁଦ୍ଧିମାନ ଯୁବକ ହିସାବରେ ପାଠ ପଢ଼ିଲାବେଳୁ କଟକରୁ ବନାରସ ଯାଏ ସେ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ସମସ୍ତେ ତାଙ୍କୁ ଜାଣିଛନ୍ତି, ଜଣେ ନିସ୍ୱାପର ସମାଜ ସେବକ, ଦେଶପ୍ରେମୀ ନିର୍ଭୀକ ଯୁବକ ହିସାବରେ । ସେଥିପାଇଁ ଅନେକ ସମୟରେ ପାଠ ପଢ଼ିଲାବେଳୁ ଜନସାଧାରଣ ଅନେକ କାର୍ଯ୍ୟରେ ତାଙ୍କର ସରଳ ନିଷ୍ପତ୍ତିକୁ ଅପେକ୍ଷା କରି ଆସୁଛନ୍ତି । ଜନତାର ଆନ୍ତରିକ ନୀରବ ନିବେଦନରେ ସେ ଲୋକ ଗହଳ ଭିତରେ ପଶୁଛନ୍ତି, ନେତୃତ୍ୱ ନେଉଛନ୍ତି । ଦେଶ ଓ ଜାତିର ଉପସ୍ଥିତ ନିଯ୍ୟାମକମାନଙ୍କ ଗହଣରେ ଆତଜାତ ହେଉଛନ୍ତି । ଏଥିଲାଗି ମଧ ତାଙ୍କୁ ବୋଲଣା ଶୁଣିବାକୁ ହେଉଛି । ଛାତ୍ରନେତା ଥିଲାବେଳେ ତାଙ୍କର ସୁନାମ ଯେଉଁମାନେ ସହିପାରୁ ନଥିଲେ, ସେମାନେ ପ୍ରଚାର କରୁଥିଲେ, 'ଗଡ଼ନାୟକ ଶାସକ ଗୋଷ୍ଠୀ

ମଧ୍ୟରେ ଆଜିହିଁ ଆସନ ନିର୍ଦ୍ଦିଷ୍ଟ କରିବାକୁ ଲାଳ ଗଡ଼ାଉଛି ।' ହୁଏତ ଏହି ପ୍ରଶ୍ନରର ଉତ୍ତର ଦେବାଲାଗି ପରବର୍ତ୍ତୀ ଜୀବନରେ ଗଡ଼ନାୟକ ଅଧ୍ୟାପକ ବୃତ୍ତିକୁ ବରଣ କଲେ କିନ୍ତୁ ସେ ଜାଣିଥିଲେ, କର୍ମୀ ସିଏ, ସାଧକ ସିଏ, ସେ ଯେଉଁଠି ହେଉ ନିର୍ଭୀକ ଭାବରେ କର୍ତ୍ତବ୍ୟ କରିଯାଏ । ଭୟାଳୁ, ଅସମର୍ଥ, ହତଭାଗ୍ୟ ପରଅର୍ଜିତ ବିତ୍ତ ଲୋଲୁପ ଭଣ୍ଡମାନେ କୁକୁର ପରି ପିଣ୍ଡାତଳେ ଠିଆହୋଇ ଆଜୀବନ ଚିତ୍କାର କରୁଥାନ୍ତି । ନିରୀହ ସରଳ ଜନମନକୁ ଭୁଲାଇ ଆପଣାର ଅସାଧୁ ଇଚ୍ଛା ପୂରଣପାଇଁ ଅସହାୟ ମଣିଷମାନଙ୍କର ଆୟୁଷ, ଦେହ ଓ ମନକୁ ଆୟୁଧ କରି ମାୟା ଯୁଦ୍ଧ କରନ୍ତି । ଭାରତର ଅନ୍ୟ ଚିନ୍ତାଶୀଳ ଲୋକଙ୍କ ପରି ଗଡ଼ନାୟକ ମଧ୍ୟ ଏହି ମହୀରାବଣମାନଙ୍କୁ ଚିହ୍ନିଥିଲେ । କିନ୍ତୁ ରାମଲୀଳାର ଆଦର୍ଶ ତାଙ୍କୁ ତୁରନ୍ତ ସେମାନଙ୍କର ସର୍ବନାଶ କରିବାକୁ ଉତ୍ସାହିତ କରୁ ନଥିଲା । ଅନ୍ୟମାନଙ୍କ ପରି ସେ ମଧ୍ୟ ହନୁମାନର ଆଗମନ ପ୍ରତୀକ୍ଷାରେ ତୁନି ରହିବାକୁ ବାଧ୍ୟ ହୋଇଥିଲେ ।

ଗଡ଼ନାୟକ ଜନ୍ମ ହୋଇଥିଲେ, ପରାଧୀନ ଭାରତର ଏକ ଅନୁନ୍ନତ ପଲ୍ଲୀ ଗାଁରେ ଏବଂ ତାଙ୍କର ପରବର୍ତ୍ତୀ ଜୀବନ ପଲ୍ଲବିତ ହୋଇ ଉଠିଥିଲା ସ୍ୱାଧୀନ ଭାରତର ଦାୟିତ୍ୱ ଜର୍ଜର କଣ୍ଟକ ସହରରେ । ତେଣୁ ସ୍ୱାଧୀନ ଭାରତର କଳଙ୍କିତ ଅତୀତ, ସଂଗ୍ରାମ ମୋହିତ ବର୍ତ୍ତମାନର ଅନୁଭୂତି ଓ ଭବିଷ୍ୟତର ଆଶା ଭରସା ତାଙ୍କ ମନ ଦର୍ପଣରେ ଥରକୁ ଥର ପ୍ରତିଫଳିତ ହୋଇ ଉଠୁଥିଲା । ଭାରତର ଈପ୍ସିତ ଜାତୀୟ ଜୀବନର ସାମାନ୍ୟ ବିଚ୍ୟୁତି ବା ବ୍ୟତିକ୍ରମକୁ ସେ ମନେ କରୁଥିଲେ, ନିଜ ଜୀବନର ବିଚ୍ୟୁତି ଓ ବ୍ୟତିକ୍ରମ । ଆଜି ଏକତିରିଶି ବର୍ଷ ବୟସରେ ସେ ଜୀବନର ଦୁଇ ପାଖକୁ ଯେତେବେଳେ ଅନୁଧ୍ୟାନ କରୁଛନ୍ତି, ଦେଖୁଛନ୍ତି— ତାଙ୍କ ଜୀବନର ପ୍ରଥମ ପନ୍ଦର ବର୍ଷ ଏକ ରୁଦ୍ଧାଚୁଲ୍ଲୀ ଗର୍ତ୍ତ ଭିତରେ ପୋଚ ସଡ଼ି ମାଟିରେ ମିଳାଇ ଯାଇଛି । ବ୍ରିଟିଶ୍ ଶାସିତ ଭାରତରେ ତାଙ୍କ ଜୀବନର ପ୍ରଥମ ପନ୍ଦର ବର୍ଷ ହଜିଯାଇଛି, ଦାରୁଣ ବ୍ୟର୍ଥତା ଓ ହାହାକାର ଭିତରେ । ପରବର୍ତ୍ତୀ ସଜଳ ବର୍ଷ, ହଁ ଠିକ ସଜଳ ବର୍ଷତ ! ତାଙ୍କ ଜୀବନର ଏହି ଦ୍ୱିତୀୟ ଭାଗ ଆରମ୍ଭ ହୋଇଛି, ସ୍ୱାଧୀନ ଭାରତର ଉନ୍ମୁକ୍ତ ଆକାଶ ତଳେ, ମଣିଷ ଜୀବନର ଚିର ଆକାଂକ୍ଷିତ ଆନନ୍ଦ ମୁଖରିତ ସ୍ୱାଧୀନ ମାତୃଭୂମିର ସୁଶାନ୍ତ କୋଳରେ । ସେ ଆଜିର ନୂତନ ଭାରତୀୟ ନାଗରିକଙ୍କ ଅପେକ୍ଷା ପରାଧୀନତାର ଉତ୍କଟ କଟୂ ବାସ୍ନା ଓ ସ୍ୱାଧୀନତାର ମହୁ-ମଧୁର ଜୀବନ ବଞ୍ଚିବା ସୁଆଦ ବେଶ୍ ଭଲ କରି, ଖୁବ୍ ଗଭୀର ଭାବରେ ଉପଲବ୍ଧି କରି ପାରୁଛନ୍ତି । ତେଣୁ ଜନ୍ମ ମାଟିର ସାମାନ୍ୟ ବିପତ୍ତି ସମ୍ଭାବନା ଦେଖିଲେ ବିଶେଷ ଭାବରେ ଥରି ଉଠୁଛି ତାଙ୍କର ଚିତ୍ତ ।

ଗଡ଼ନାୟକ ବାରି ମୁଣ୍ଡିଆଳ ଭଙ୍ଗା କାନ୍ଥ ସେ ପାଖରୁ ଦୃଷ୍ଟି ବୁଲାଇ ଆଣି ଡାହାଣ ପାଖର ଅଧାମେଲା ଝରକା ବାଟେ ଆହୁରି ଦୂରକୁ ଅନେଇଲେ । ଦୂରରେ ଗ୍ରେଟିଆ ପାହାଡ଼ଟି ତଳେ ସୁନ୍ଦର ସବୁଜ ଶସ୍ୟକ୍ଷେତ ମାଡ଼ି ଉଠିଛି । କର୍ମରତ କୃଷକ ଓ ତା ପତ୍ନୀ, କନ୍ୟାଙ୍କ ହର୍ଷ-ଉତ୍ଫୁଲ୍ଲ ବିଚରଣ ମନ ପ୍ରାଣକୁ ଟାଣି ନେଇ ଯାଉଛି । ତାର ବାଁ ପାଖରେ ଆଖି ଆଗରେ ଠିଆ ହୋଇଛି ନୂଆରେ ଗଢ଼ି ଉଠୁଥିବା ଶିଳ୍ପାଞ୍ଚଳର ବିରାଟ ବିରାଟ କାନ୍ଥ । ଶହ ଶହ ଶ୍ରମିକ ଯୁବକ ଯୁବତୀଙ୍କ ଅବିଶ୍ରାନ୍ତ ହସ ଟହ ଟହ ମୁହଁର ଚିତ୍ତାକର୍ଷକ ସମ୍ମିଳନ ଓଟାରି ନେଉଛି ହୃଦୟକୁ । କିନ୍ତୁ ଏମାନେ କିଏ ? ତାର ଭିତରେ ଡେଙ୍ଗା ହୋଇ, ମୋଟା ହୋଇ, ହାଡ଼ୁଆ ଧଡ଼ିଆ ବାଙ୍ଗରା ଟାଙ୍ଗରା ହୋଇ ଜଣେ ଅଧେ ସଇତାନ ଏପରି ଗଳି ପଶି ଯାଉଛନ୍ତି କାହିଁକି ? ଶ୍ରମିକମାନଙ୍କୁ ମତାଇ ଫନ୍ଦ କରି, ସଭ୍ୟ ଗୃହାରେ ମଦ ପିଇବା ପାଇଁ ଜାଲ ପାତିବାକୁ ? ସମାଜର ଏ ନିରୀହ ଲୋକମାନଙ୍କୁ ମନାଇ ଧର୍ମଘଟ କରାଇ ମାଲିକଙ୍କୁ ଡରାଇବାକୁ ? 'ଦି ହଜାର ଟଙ୍କା ଗୃହା ଦେବେ ନା ଆମ ପାର୍ଟିକୁ ?' ପଚାରିବା ସକାଶେ ? ଅନାବଶ୍ୟକ ଆନ୍ଦୋଳନ କରି ଦେଶର ଅଗ୍ରଗତିରେ ଅବାଞ୍ଛିତ ବାଧା ସୃଷ୍ଟି କରାନ୍ତି ଯେଉଁମାନେ, ଏମାନେ କଣ ସେହି ଭଣ୍ଡମାନଙ୍କର ଦଲାଲ ? କିଏ ଏମାନେ ? ଦସ୍ୟୁ ଚୀନ୍‌ର ଦଲାଲ ? ନା ଆମର ଭାଇ, ଆମର ଭଗାରି ?

ଗଡ଼ନାୟକ ଖାତା ଖୋଲି କବିତା ଲେଖିଲେ—

'ହିନ୍ଦ୍ ଚୀନ ଭାଇ ଭାଇ
କଂଗ୍ରେସ୍ କମ୍ୟୁନିଷ୍ଟ ଭାଇ ଭାଇ ?
ବଳଦ ପୋଡ଼ ଭାଇ ଭାଇ !'

ନା, ଏ କବିତା କୌଣସି ପତ୍ରିକା ଛପେଇବେ ନାହିଁ । ଖଣ୍ଡିଆ କବିତାଟିକୁ ସେ ଚୁଲ୍ଲେଇ ଫୋପାଡ଼ ଦେଇ ଗଳ୍ପ ଲେଖିଲେ ।

'ଲକ୍ଷପତି ବଂଶୀ ରଥଙ୍କ ପୁଅ ଭୋଳାନାଥ କଂଗ୍ରେସ ନେତା ନରେଶ ସିଂହଙ୍କ ସାହାଯ୍ୟରେ ରୁଷିଆରୁ ଉଚ୍ଚ ଶିକ୍ଷା ପାଇ ଫେରି ଆସିଲା ପରେ ଭାବିଲା, ଏ ଦାସତ୍ୱବନ୍ଧନ, ଏ ସରକାରୀ ଗୃକିରି ବାଳକର ତାକୁ ପୋଷାଇବ ନାହିଁ । ସେ ଏତେ ଫାଇଲ, ଏତେ ଧାଁ ଧପଡ଼ିଆ କାମ କରି ପାରିବ ନାହିଁ । ଶିଳ୍ପ, ଫିଲ୍ମ କଲେ ହୁଅନ୍ତା, କିନ୍ତୁ ନିଜର ଲାଭଟା କଣ ? ଅକ୍ଳାନ୍ତ ପରିଶ୍ରମ ପରେ ଅଜସ୍ର

ଟଙ୍କା ! କିନ୍ତୁ ଟଙ୍କା ତାର କିଣ ହେବ ? ଟଙ୍କା କିଣ ତାଙ୍କର ଘରେ ନାହିଁକି ! ବରଂ ଏଥିରେ ଲାଭ ହେବ ଗାଧ ଖଟଣି, ବହୁ ରକମର ହଇରାଣ !

ଦୁଷ୍ଟ ପିଲାର ଆନନ୍ଦ ଭାଙ୍ଗିବାରେ, ଗଢ଼ିବାରେ ନୁହେଁ । ଗଠନମୂଳକ କାର୍ଯ୍ୟ କରିବାରେ ଭୋଳାନାଥ ଆନନ୍ଦିତ ହେବ କିପରି ? ତାର ତ ଆନନ୍ଦ କାମ କରାଇ ନ ଦେବାରେ । ଯଦି କେମିତି କେମିତି ସେ ପ୍ରବଳ ପ୍ରତାପି ରଜାଟିଏ ହୁଅନ୍ତା, ମନ ଖୁସିରେ ଅନ୍ୟମାନଙ୍କ ଜୀବନ ସାଙ୍ଗରେ ଖେଳ ଖେଳନ୍ତା, ଯେଉଁମାନେ ସମାଜରେ ତାର ସମାନସ୍କନ୍ଧ ହୋଇ ଭଲରେ ଅଛନ୍ତି, ସେମାନଙ୍କୁ ପଦେ ପଦେ ବିପନ୍ନ କରାନ୍ତା— କିନ୍ତୁ ହାୟ୍ ତାହା ବି ହୋଇ ପାରିବ ନାହିଁ । ରଜା ଭଜା ଚଳନ ଏ ଦେଶରୁ ଉଠି ଗଲାଣି ।

'ଯୁଗଧର୍ମ ଅନୁସାରେ ମନ୍ତ୍ରୀ ଫନ୍ତ୍ରୀଟାଏ ହେଲେ ହୋଇ ପଡ଼ନ୍ତା କି !'

ଭୋଳାନାଥ ଅନେକ ସମୟରେ ଭାବେ । କିନ୍ତୁ ସେଥିପାଇଁ ଆବଶ୍ୟକ ଯେଉଁ ସାଧନା, ତ୍ୟାଗ, କିଏ କରିବ ଏତେ କଥା ? ନିଜ ଅଜାଣରେ ଭୋଳାନାଥ ପ୍ରତିଜ୍ଞା କରେ ମନେ ମନେ, ସେ କିଛି କରିବନି ଓ ତାର କାମ ହେବ— ଅନ୍ୟମାନଙ୍କୁ କିଛି କରାଇ ନଦେବା ।

ସ୍ୱଦେଶକୁ ଫେରି ଭୋଳାନାଥ କାର୍ଯ୍ୟ ଆରମ୍ଭ କରିଦେଲା । ସେ ଦେଖିଲା, ଗୁଡ଼ାଏ ଅଯୋଗ୍ୟ ବେକାର ଲୋକ, ବିଦେଶୀ ସରକାରର, ନିକଟ ଅତୀତର ରଜା ଜମିଦାରମାନଙ୍କର ପୋଷିଲା ପାଳିଲା ଗୃହପାଳିତ ପଶୁପରି ଲୋକଗୁଡ଼ାକ ଏବଂ ଆଉ କେତେ ନିକମା ଅସାମାଜିକ ମଣିଷ ଅଶାନ୍ତ ମନରେ ଛିନ୍ନଛତ୍ର ହୋଇ ଦେଶର ଏ ପାଖ ସେ ପାଖରେ ପଡ଼ି ରହିଛନ୍ତି । ଭୋଳାନାଥ ସ୍ଥିର କଲା, ଏଇଗୁଡ଼ାଙ୍କୁ ଏକାଠି କରି ଶସ୍ତାରେ ସେ ଗୋଟାଏ ପ୍ରଦେଶର ନେତା ହୋଇଯିବ । ନେତା ! କମ୍ କଥା ନୁହେଁ । ନେତା ହିସାବରେ ସେ ଯାହା ଚାହିଁବ, ନିର୍ଦ୍ଦେଶ ଦେଇ ପାରିବ ଏବଂ ଲକ୍ଷ ଲକ୍ଷ ଲୋକ ତାର ନିର୍ଦ୍ଦେଶ ମାନି ଚଳିବାକୁ ବାଧ୍ୟ । ଇଚ୍ଛାକଲେ ସେ ଏ ଦେଶର ସରକାରକୁ ପଦେ କଥାରେ ଥରେଇ ଦେଇ ପାରିବ !

ଏ ଦେଶରେ ଏପରି ନେତା ହେବାର ନିଶା କିଣ କମ୍ ଲୋକଙ୍କୁ ଘାରେ କି ! 'ଲଙ୍ଗଳା ଲଙ୍ଗଳ ଦେଖିରେ ବିଦି' ଗୀତ ଗାଇ ପିଲାଙ୍କୁ ମୋହିତ କଲାପରି ଦିନ ଦି ପହରରେ ଚେଇଁଥିବା ଜନତା ଆଖିରେ ଧୂଳିମାରି, କଳାକୁ ଧଳା କରି,

ବାଛୁରୀକୁ କୁକୁର ପ୍ରମାଣିତ କରେଇ, ସରଳ ଗାଁବାସୀଙ୍କୁ କଥା କେଇ ପଦରେ ଚିଆମଡ଼ା କରି, ଗୃହଁ ଗୃହଁ ହଜାର ହଜାର ଲୋକଙ୍କୁ ବିପଥଗାମୀ କରେଇ ଭଲ ଲୋକଙ୍କୁ ମନ୍ଦ ପ୍ରମାଣିତ କରିଦେଇ ନିଜେ ଭଲେଇ ହେବା, ବାହା ବାହା ପାଇବା କି କମ୍ ସୁଖକର !

ଯେପରି ଦୁଷ୍ଟ ପିଲା ତାର ସ୍ଲେଟ୍‌ଫଟାଟା ଯଦି ଅନେକ ଦିନଯାଏ ସ୍କୁଲକୁ ଯିବା ବାଟରେ ମନକୁ ହାତରୁ ଖସିପଡ଼ି ନ ଭାଙ୍ଗି ଯାଏ, ଦିନେ ହଠାତ୍ ଜାଣିଶୁଣି ଫୋପାଡ଼ି ଫିଙ୍ଗି, ଗୋଇଠା ମାରି ଭାଙ୍ଗିଦେଇ ପ୍ରଚୁର ଆନନ୍ଦ ପାଇଥାଏ; ସେହିପରି ଭୋଳାନାଥ ଦେଶସେବା ଲାଗି ନେତୃତ୍ୱ ହାସଲ ନାମରେ ଦେଶକୁ ଉଜାଡ଼େ, ଜାତିକୁ ଭାଙ୍ଗିବାରେ ଆନନ୍ଦ ପାଏ । ଭୋଳାନାଥ ଭାବେ, ଦରକାର ବେଳେ ଗୁଡ଼ାଏ ସରଳ ଲୋକଙ୍କୁ 'ନାଚରେ ମାଙ୍କଡ଼ି ନାଚ' କହି ଏ ପାଖ ସେ ପାଖ କରି ନଚେଇବା ପାଇଁ ଦଳେ 'ବୋଲ ବିତରଣକାରୀ' ହିକର ନିଯୁକ୍ତ କରିବା ଦରକାର । ତେବେ ସେଗୁଡ଼ାକ ଖାଇବେ ତ ! ସେ ଖର୍ଚ୍ଚ ତୁଲେଇବ କିଏ ? ନା ଏଥିପାଇଁ ଗୋଟାଏ ଅନ୍ତର୍ଜାତିକ ସଂଗଠନର ଆଶ୍ରୟ ନିଆଯାଉ । ଯେ କୌଣସି ସମର୍ଥ ଗୋଷ୍ଠୀ ନିଜର ମତବାଦର ପ୍ରତିଷ୍ଠା ଓ ସମ ମତବାଦୀ ଶାସନର ସଂପ୍ରସାରଣ ପାଇଁ ଟଙ୍କା ଦେବନାହିଁ ନା ସପକ୍ଷରେ ଢୋଲ ପିଟିବ ନାହିଁ ?

ଶୁଖୁଆ କଣିକା ପରି ଟଙ୍କା ଦେଇ ଯଦି ମଣିଷର ଇଜ୍ଜତ କଣାଯାଇ ପାରେ, ଦେଶଦ୍ରୋହୀ କଣାଯାଇ ପାରିବେ ନାହିଁ କାହିଁକି ? ଏହି ଅପବ୍ୟୟ ପାଇଁ ଟଙ୍କା ଲୋଡ଼ାହେଲେ ମାଟି, ଗୋଡ଼, ବାଲି ପରି ଦେଶର ସ୍ୱାଧୀନତାକୁ ବନ୍ଧକୀ କରିଦେବା ଅସମ୍ଭବ ହେବ କାହିଁକି ?

ଯାହାହେଉ ଗୁଡ଼ାଏ ମଣିଷଙ୍କୁ ବୋକା କରି କରି ରଖିବା ସତରେ କେଡ଼େ ମଉଜ ଯେ ! ନେତା ଯାହା କହୁ, ଏମାନେ ତାଳି ମାରିବେ, ଜେ ଜେ କହିବେ । ହାତ ହଲେଇବେ । ବାଃ ସତକୁ ସତ ଲୋମ ଟାଙ୍କୁରି ଉଠେ !

ଅମୁକ ଦଳର ଅପ୍ରତିଦ୍ୱନ୍ଦ୍ୱ ନେତା ଭୋଳାନାଥ, ସର୍ବହରା ଦଳର ମୁଖ୍ୟ ସଞ୍ଚାଳକ ଲକ୍ଷପତିର ପୁଅ ଭୋଳାନାଥ...'

ଛିଃ—

ଅଧ୍ୟାପକ ଗଡ଼ନାୟକ କଲମ ଥୋଇଦେଲେ । ଏ ମାଟମନାମାନଙ୍କ ଚରିତ୍ରକୁ ନେଇ ପୁଣି ଗପ ଲେଖାଯିବ ! ସେ ଝରକା ବନ୍ଦ କରିଦେଲେ ।

'ସମୁଦ୍ର ମନ୍ଥନରୁ କେବଳ ଅମୃତ ନୁହେଁ, ଗରଳ ମଧ ବାହାରେ ।'

ପଞ୍ଜାବ ହୋଟେଲରେ ବସି ଚାହା ପିଉ ପିଉ 'ରେଡ଼ିଓ'ର ପର୍ଯ୍ୟଟକ ସମ୍ବାଦଦାତା ପ୍ରିୟରଞ୍ଜନ ଆରମ୍ଭ କଲା ।

'କଣ ଗରଳ ବାହାରେ ?' ପଚାରିଲା ଜୀବନ ବୀମା ସଂସ୍ଥାର ଖ୍ୟାତନାମା ଏଜେଣ୍ଟ ଗୌରୀଶଙ୍କର ମହାରଣା ।

'ସତେ ଯେମିତି ତମେ କିଛି ଜାଣିନ ! ଜୟପୁରରେ ଚୀନା ଯୁଦ୍ଧ ଆଉ ପ୍ରତିରକ୍ଷା ନେଇ ଯେଉଁ ସମୁଦ୍ର ମନ୍ଥନ ଚାଲିଛି, ଅମୃତ ଗୁଣ୍ଡୁ ଗୁଣ୍ଡୁ ପରେ ଏବେ ବିଷ ଝରିବା ଆରମ୍ଭ ହୋଇ ଯାଇଛି ।'

'ଆଚ୍ଛା, ଭାରି ମଜା କଥାଟେ ତ କହିଲ । ହଁ ହଁ କଣ ହେଇଚି ? ମୁଁ କିଛି ଶୁଣିନାହିଁ ଭାଇ, ରାଣ ପକେଇ କହୁଛି !'

ଗୌରୀଶଙ୍କର ମହାରଣା ସିଗ୍ରେଟ୍ ଲଗେଇଲା ।

'ଇସ୍, ଏତେବଡ଼ କଥା ତମେ ଶୁଣିନ ? ଆଉ କି ଇନ୍ସୁରାନ୍ସ କରିବ ହେ ? ଘରର ଝିଅକୁ ଦାଣ୍ଡକୁ ଆଣି ପରା ଏଇ ଦଳଟା ଉମାଟାକୁ ଶେଷ କରି ଦେଲେଣି ! କବିତା ତ ମୂଳରୁ ଯାଇଛି । ଏବେ ଆହୁରି କେତେ ମିଶିଲେଣି ।'

ମହାରଣା ଉତ୍ସାହିତ ହୋଇ କହିଲା, ଆଚ୍ଛା, ଆମର ଏ ମିସ୍ ଉମାଦେବୀ ? କୁ ଦଳଟା ?

ପ୍ରିୟରଞ୍ଜନ ଚାରିଆଡ଼କୁ ଚାହିଁ ସନ୍ତର୍ପଣରେ କହିଲା, ସେହି ଦଳ ହେ, ଆଉ କିଏ ହେବେ ? ଯେଉଁମାନେ ନେତା ବୋଲେଇ ହେଉଛନ୍ତି !

'ସତେ ? ରାମ ରାମ ! ତା ଯଦି ହୋଇଥାଏ, ମୁଁ ଭାଇ ସତ କହୁଛି, ଏମାନଙ୍କର କାଳ ପୂରିଗଲା । ତାହାପରା ଝିଅକୁ ଯଦି……'

ମହାରଣା ରଗିଗଲ ।

ପ୍ରିୟରଞ୍ଜନ ଦେଖିଲା ଏ ସୁଯୋଗ ଛାଡ଼ିବାର ନୁହେଁ । ସେ ତା ଶରୀରର ସମସ୍ତ ଜୋର୍ ଲଗେଇ କହିଲା, ଖାଲି ସେତିକି ? ଏ ଭିତରେ ଥରେ ତାଙ୍କୁ ଭାଇଜାଗ ହସ୍‌ପିଟାଲକୁ ଲୁଚେଇ ନିଆଯାଇ ଥିଲା ମଧ୍ୟ । ମୋର ଓକିଲ ବନ୍ଧୁ ଗିରୀଶ ବାବୁ ପରା ନିଜ କାନରେ ଶୁଣିଛନ୍ତି! କେବେ କେମିତି ତମେ ଟିକିଏ ସଞ୍ଜ ସଞ୍ଜବେଳେ ସେ କଂଗ୍ରେସ ଅଫିସ ଆଡ଼େ ଯାଇ ଦେଖ ତ, କେମିତି ଆଡ୍‌ଡ଼ା ଲଗିଥିବ । ଫରେନ୍ ନହେଲେ ଚଳୁନାହିଁ ଆଜି କାଲି ।'

ମହାରଣା ମୁଣ୍ଡରେ ହାତ ଦେଲା । ସେ ସନ୍ଦେହାକୁଳ ହୋଇପଡ଼ି ପ୍ରିୟରଞ୍ଜନର ସାର୍ଟ କଲର୍‌ଟାକୁ ଭିଡ଼ିଧରି କହିଲା, ତୁମେ ସତ୍ୟ କହୁଚ ପ୍ରିୟରଞ୍ଜନ ?

କେଜାଣି କାହିଁକି ପ୍ରିୟରଞ୍ଜନର ଅନ୍ତର ଥରିଗଲା । ତା ପାଟି ଆପୁ ଆପୁ ହେଲା ଓ ସେ ବିଚଳିତ ହୋଇ କହିଲା, 'ଆରେ ଲୋକେ ଯାହା କୁହାକୁହି ହେଉଛନ୍ତି, ଯାହା ମୁଁ ଶୁଣିଥିଲି କହିଲି ନା— ମୁଁ କଣ ନିଜେ କିଛି ଦେଖିଛି କି! ମିଛ କି ସତ ମୁଁ କେମିତି ରାଣଖାଇ କହିବି ? ତମେ ନିଜେ ବୁଝିନ!'

'ଆରେ ରେ ତା ହେଲେ ତ ମୁଁ ବଡ଼ ଭୁଲ୍ କରୁଥିଲି ।'

'କେମିତି ?'

'ଆଜିପରା ମୋ ସ୍ତ୍ରୀଙ୍କୁ ବୁଝେଇ କହୁଥିଲି, ଉମା ଯାହା କହିବ ସେ ଅନୁସାରେ ଚଳ । ଦେଶପାଇଁ କାମ କରିବା ଖୁବ ଭଲ କଥା ।'

'ଭୁଲ୍ ଭୁଲ୍, ମହାଭୁଲ୍ ।'

ପ୍ରିୟରଞ୍ଜନ ଯେ ବିରୋଧୀ ଗୋଷ୍ଠୀର ଭିତରିଆ ଦଲାଲ କି ନୁହେଁ ଏ କଥା ମହାରଣା ଭଳି ସରଳ ଯୁବକମାନେ ଅନୁମାନ କରନ୍ତେ କିପରି ? ସେ ତା କଥାରେ ବିଶ୍ୱାସ କରି ବିବ୍ରତ ଭାବରେ ଫେରି ଆସିଲା । ସେତେବେଳଠାରୁ ସେ ଯେଉଁଠି ଯାହାକୁ ପାଇଲା ଉମା, ବିଭୁ ବାବୁ ପ୍ରଭୃତିଙ୍କ ନାମରେ କୁତ୍ସାରଟନା କରିବାକୁ ମଧ୍ୟ ପଚ୍ଛେଇଲା ନାହିଁ । ଆବଶ୍ୟକ ହେଲେ ହାତରୁ ପାଞ୍ଚ ମିଶାଇ ସେ ତର୍କ କରିବାକୁ ବି କୁଣ୍ଠିତ ହେଲାନାହିଁ । ଏପରି କି କଥା ଲହସରେ 'ନିଜେ ନି ଆଖିରେ ଦେଖିଛି' ବୋଲି ମଧ୍ୟ ଅନେକ ସ୍ଥାନରେ କହି ପକାଇଲା ।

ପ୍ରତିରକ୍ଷା ପରିଷଦ ନିର୍ଦ୍ଦେଶ ଦେଇଛନ୍ତି, ଭାରତୀୟ ସେନା ବାହିନୀର ରିକ୍ରୁଟିଂ ଅଫିସର ଦ୍ୱିତୀୟ ଥର ପାଇଁ ଜୟପୁର ଆସୁଛନ୍ତି । ଯୁବକ ଯୁବତୀମାନଙ୍କୁ ଉତ୍ସାହିତ କର । ସଭା ସମିତି କରି ଉପସ୍ଥିତ ସୀମାନ୍ତ ବିପତ୍ତି ସମ୍ପର୍କରେ ଦେଶବାସୀଙ୍କୁ ଜାଗ୍ରତ କରାଅ ।

ବିଭୁ ବାବୁ ଗଡ଼ନାୟକଙ୍କୁ କହିଲେ, ଉମା, କବିତା, ହେମ ଓ ମଞ୍ଜୁମାଳା ଜୟପୁରରେ ସାହି ସାହି ବୁଲି ସଭା ସମିତି କରନ୍ତୁ । ଆପଣ ଓ ଆମ କଂଗ୍ରେସ ସଭାପତି ସେମାନଙ୍କର ପୃଷ୍ଠପୋଷକତା କରନ୍ତୁ । ତହସିଲଦାର, ମ୍ୟୁନିସିପାଲିଟି ଚେୟାରମେନ୍, ଏକ୍‌ଜିକ୍ୟୁଟିଭ ଅଫିସର ଓ ପରିଷଦର ଅନ୍ୟ ସଭ୍ୟମାନେ ପୁରୁଷମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିବାର ଦାୟିତ୍ୱ ନେଇଛନ୍ତି । ମୁଁ ଆଉ ଜିଲ୍ଲା ପରିଷଦ ଚେୟାରମେନ୍ ଆମ ଦଳ ବଳ ସହ ମଫସଲ ଅଞ୍ଚଳକୁ ଯାଉଛୁ ।

ଗଡ଼ନାୟକ କହିଲେ, ଆପଣମାନେ ଯାହା କହିବେ କରିବି । କିନ୍ତୁ ଆପଣ ସହରରେ ରହିଗଲେ ମନ୍ଦ କଣ ହୁଅନ୍ତା ? କଂଗ୍ରେସ ସଭାପତି ମଫସଲ ଯାଆନ୍ତେ । ଏ କଥା ମୁଁ କହୁଛି କାହିଁକି ନା, ସହରର ପ୍ରଭାବ ସ୍ୱତଃ ମଫସଲ ଉପରେ ପଡ଼ିଥାଏ । ତେଣୁ ସହରର ଜାଗରଣ ସୁସଂଗଠିତ ହେବା ଦରକାର ।

ବିଭୁ ବାବୁ ହସି ହସି କହିଲେ, ବୁଝିଲି । କିନ୍ତୁ ଆମେ ପରା ଯେତେବେଳେ ମଧ୍ୟ ରାଜନୀତି କରୁଛୁ । ବିରୋଧୀ ଗୋଷ୍ଠୀର ଚକ୍ରାନ୍ତ ସବୁବେଳେ ଆମ ପଛରେ ଚାଲିଛି । ବର୍ତ୍ତମାନ ଉମାର ସୁନାମ ବଢ଼ି ଯାଇଛି । ସେ ଆମ ଦଳର କର୍ମୀ ବୋଲି ତା ପଛରେ ମଧ୍ୟ ଚକ୍ରାନ୍ତକାରୀମାନେ ଲାଗି ଗଲେଣି । ସେ ଯାହାହେଉ ବର୍ତ୍ତମାନ ପରିସ୍ଥିତିରେ ଆମେ କୌଣସି ମହିଳା କର୍ମୀ ସହିତ ମିଳାମିଶି କାମ କରିବା ଉଚିତ ହେବନାହିଁ । ଆପଣ କାମ ଚଳାଇ ନିଅନ୍ତୁ । ଆମେ ଆପଣମାନଙ୍କ ପଛରେ ଅଛୁ । ଗୋଟିଏ କଥା, ବିରୋଧୀ ଗୋଷ୍ଠୀର କୌଣସି ଚକ୍ରାନ୍ତମୂଳକ କୁତ୍ସାରଟନାରେ ଆପଣମାନେ ବିଚଳିତ ହେବେନାହିଁ । ପ୍ରତିକାର ବ୍ୟବସ୍ଥା ଯଥାସମୟରେ କରାଯିବ ।

ସେ ଚାଲିଗଲେ ।

ବାଭୁ ବାବୁ ଚାଲିଗଲା ପରେ ଗଡ଼ନାୟକ ରାସ୍ତା ଉପରକୁ ଚାହିଁ ଭାବିଲେ, ଯେତେ ସ୍ୱାର୍ଥତ୍ୟାଗ କଲେ ମଧ୍ୟ ମଣିଷ କଣ ଅନ୍ତହୀନ କୁତ୍ସାରଟନାର ଶୀକାର ହେବାକୁ ବାଧ୍ୟ ?

ଆଜ ତାଙ୍କୁ ବଡ଼ ଅସ୍ଥିର ଲାଗିଲା । ଜୟପୁର ସହରର ସଡ଼କ, ସଡ଼କ ଢ଼କରର ଧୂଳି, ଛିଣ୍ଡା କାଗଜ, ଖଣ୍ଡିଆ ପିକା, ଦରପୋଡ଼ା ବାଡ଼ ସିଗ୍ରେଟ୍, ପାନ ଛେପ ଓ ଗୋଟିଏ ଉପରେ ଗୋଟିଏ କରି ମାଡ଼ି ଯାଇଥିବା ଜିପ୍‌ଗୁଡ଼ିକର ଅସଂଖ୍ୟ ଚକ ଚିହ୍ନ ମଧ୍ୟ ଆଜ ତାଙ୍କୁ ଉତ୍ତର ସୀମାନ୍ତର ସଂଗ୍ରାମରତ ପାପାଗ୍ରସ୍ତ ଚୀନ୍ ସୈନ୍ୟଙ୍କ ଅନ୍ୟାୟ ସମାବେଶ ଭଳି ଲାଗିଲା । ସେ ମୁଣ୍ଡପୋତି ଘରକୁ ଚାଲିଗଲେ ।

କବିତା ଭିତର ଘରେ ତର ତର ହୋଇ ଲୁଗା ବଦଳାଉ ଥିଲା । ଗଡ଼ନାୟକ ଘରକୁ ଆସିବା ଜାଣି ପାଖକୁ ଆସି କହିଲା, ତୁମେ ଯାହା କହ, ଉମା ନାଶ ନୁହେଁ ଦେବୀ !

ଗଡ଼ନାୟକେ ହସି ହସି ପଚାରିଲେ, କେମିତି ?

କାନ୍ଥ-ଦର୍ପଣ ଆଗରେ ଠିଆହୋଇ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ କବିତା କହିଲା, ଯେଉଁମାନେ ତାର ପ୍ରଶଂସା ଶୁଣିପାରୁ ନାହାନ୍ତି, ତାକୁ ଦେଖି ସହିପାରୁ ନାହାଁନ୍ତି, ସେମାନଙ୍କର ଲକ୍ଷେ ସମାଲୋଚନାସତ୍ତ୍ୱେ ସେ ଟିକିଏ ମାତ୍ର ବିଚଳିତା ନହୋଇ ଯେମିତି ଭାବରେ କାମ କରୁଛି, ତାର ଗୋଡ଼ତଳେ ପଡ଼ି ଥରକୁ ଥର ତା ପାଦର ଧୂଳି ମୁଣ୍ଡରେ ମାରିବାକୁ ଇଚ୍ଛା ହେଉଛି ।

ଗଡ଼ନାୟକ ଖଟ ଉପରେ ଗଡ଼ି ପଡ଼ୁ ପଡ଼ୁ କହିଲେ, ଯାହାହେଉ ତୁମେ ଯେ ତାଙ୍କର କୁତ୍ସାରଟନା ଆରମ୍ଭ କରିନାହିଁ ରକ୍ଷା ହୋଇଛି । ଆଚ୍ଛା, ପୁଣି କୁଆଡ଼େ ବାହାରିଲ କି ?

'ନ ବାହାରିବାକୁ ଚାରା ଅଛି ? ସେ କଣ ଆମକୁ ରଖେଇ ଥୋଇ ଦେଉଛି । ଏକ୍ଷଣି ପରା ଲକ୍ଷ୍ମଣ ନାୟକ ଟାଉନ୍ ହଲ୍‌ରେ ମିଟିଂ ଅଛି ! ବିରାଟ ମହିଳା ସଭା ! ଭୁଲି ଗଲଣି କି ? ଚାଲ, ତୁମେ ବି ଯିବ ।'

'ତୁମେ ଯାଅ କବିତା । ମୋତେ ଆଜ ଭଲ ଲାଗୁନାହିଁ ।'

'କଣ ହେଲା ?'

'ମନଟା କେମିତି ଖଟ୍ ଖଟ୍ ଲାଗୁଛି । ତୁମେ ଯାଅ, ଶୀଘ୍ର ଫେରି ଆସିଲେ ଗପ କରିବା । ଉମାକୁ ମଧ୍ୟ ଡାକି ଆଣିବ ।'

'ହେଉ ।'

କବିତା ରିକ୍‌ସାରେ ବସି ଚାଲିଗଲା ।

ସଭା ଆରମ୍ଭ ହୋଇ ଗଲାଣି । ଆଶ୍ଚର୍ଯ୍ୟର କଥା, ଆଜିର ଏ ମହିଳା ସଭାରେ ଅସଂଖ୍ୟ ପୁରୁଷ ଦେଖଣାହାରି ମଧ୍ୟ ଆସନ ଜମେଇ ବସିଛନ୍ତି । ଅନେକ କଲେଜ ଛାତ୍ର, ଶିକ୍ଷକ, କିରାଣି ହଲ୍ ପିଣ୍ଡାରେ, ଅଗଣାରେ ଟହଲ ମାରୁଛନ୍ତି । ଏ ସହରର ସଂଗଠିତ ମହିଳା ଆନ୍ଦୋଳନ ସମସ୍ତଙ୍କୁ ପ୍ରଭାବିତ କରିଛି ।

ଉମା ତାର ସ୍ୱଭାବ ସୁଲଭ ବଜ୍ର ଗମ୍ଭୀର ସ୍ୱରରେ ଭାଷଣ ଆରମ୍ଭ କରି ଦେଇଛି— ଆମର ସକଳ ଶାନ୍ତି ପ୍ରସ୍ତାବସତ୍ତ୍ୱେ ୧୯୬୨ ସେପ୍‌ଟେମ୍ବର ଆଠ ତାରିଖରେ ଚୀନ୍‌ମାନେ ପୁଣି ଆମ ଅଞ୍ଚଳ ଭିତରକୁ ପଶି ଆସି କାମେଙ୍ଗ୍ ଓ ଟାଓ୍ୱାଙ୍ଗ ଉପରେ ଆକ୍ରମଣ କଲେ । ଆପଣମାନେ ଜାଣନ୍ତି, ସେତେବେଳେ ମଧ୍ୟ ଭାରତ ରକ୍ଷାର୍ଥେ ସଂଗ୍ରାମ ପାଇଁ ଆପଣା ସୈନ୍ୟ ବାହିନୀକୁ ନିଯୁକ୍ତ କରି ନଥିଲା । କିନ୍ତୁ ଅକ୍ଟୋବର କୋଡ଼ିଏ ତାରିଖରେ ସେମାନେ ପୁନର୍ବାର ଯେତେବେଳେ ଆମର ଉତ୍ତର ସୀମାର ପୂର୍ବ ଓ ପଶ୍ଚିମ ଭାଗ ଉପରେ ବ୍ୟାପକ ଆକ୍ରମଣ ଆରମ୍ଭ କରିଦେଲେ, ପ୍ରତିରୋଧ ନ କରି ଉପାୟ ନଥିଲା ।

ମୋତେ ଆଶ୍ଚର୍ଯ୍ୟ ଲାଗେ, ଏହି ମଣିଷ— ଏତେ କୃତଘ୍ନ, ଏତେ ବିଶ୍ୱାସଘାତକ ହୋଇପାରେ ? ପର ଜମି, ପର ସ୍ତ୍ରୀ, ପର ସମ୍ପତ୍ତି, ପର ଦେଶ— ଦୂରରୁ ଆଡ଼େଇ ହୋଇ ଚାଲିଯିବା କଥା; ଏ ସବୁ ଉପରେ ପୁଣି ବଳପ୍ରୟୋଗ କରି ଆକ୍ରମଣ କରାଯାଇ ପାରେ ! ବିଶେଷ କରି ଭାରତ ଭଳି ଉଦାର ବନ୍ଧୁ ଦେଶ, ଶାନ୍ତିପ୍ରିୟ ରାଷ୍ଟ୍ର ଉପରେ ଆକ୍ରମଣର ଅର୍ଥ କଣ ? ତା ହେଲେ ପୃଥିବୀରେ ନ୍ୟାୟ ନାହିଁ ? ମାନବିକତା ନାହିଁ ? ବିବେକ ବିଚାର ନାହିଁ ? ସତ୍ୟ, ନ୍ୟାୟ, ଧର୍ମ— ସବୁ ଲୋପ ପାଇ ଗଲାଣି ?'

ଉମା ଟିକିଏ ରହିଯାଇ କପାଳରୁ ଝାଳ ପୋଛିଲା । ଦୂରରୁ ଶ୍ରୋତାମାନେ କୁହାକୁହି ହେଲେ, ସାବାସ୍ ! ସାବାସ୍ !

ପୁଣି ସେ ଆରମ୍ଭ କଲା— 'ଭାରତବାସୀଙ୍କୁ ଆଜ ଭାରତର ଏହି ପବିତ୍ର ମାଟିକୁ ରକ୍ଷା କରିବା ଲାଗି ଅସ୍ତ୍ର ଧାରଣ କରିବାକୁ ପଡ଼ୁଛି, ରକ୍ତାକ୍ତ ସଂଗ୍ରାମରେ ଲିପ୍ତ ହେବାକୁ ହୋଇଛି, ଏଇଥିରୁ ବୁଝିବାକୁ ହେବ, ଏ ଯୁଦ୍ଧ ଭଗବାନଙ୍କ ଦ୍ଵାରା ଅଭିପ୍ରେତ । ସ୍ୱୟଂ ସ୍ରଷ୍ଟାଙ୍କର ଇଚ୍ଛାକୃତ । ଏ ଯୁଦ୍ଧରେ ଜୟଲାଭ କଲେ, ସୁଖ ଲାଭ ହେବ । ମଲେ ମିଳିବ ଉତ୍ତମ ଜନ୍ମ ! ଗୀତା ସ୍ପଷ୍ଟ କହି ଦେଇଛି, ତୁମଙ୍କୁ, ତୁମ ଆତ୍ମାକୁ କେହି କେବେ ବିନାଶ କରି ପାରିବ ନାହିଁ । ଲକ୍ଷେ ଆଟମ୍ ବୋମ୍ କି ଅୟୁତେ ମେଗାଟନ୍ ତମ ଆତ୍ମାକୁ ଛୁଇଁ ପାରିବ ନାହିଁ । ଏ ପ୍ରାଣୀ ଜଗତରେ କାହାକୁ କିଏ ମାରି ପାରିବ ନାହିଁ । ଏ ସବୁ ପାଗଳର ପ୍ରଳାପ । ଏ ପୋଷାକ, ଏ ସାର୍ଟ ପେଣ୍ଟ, ସାୟା ଶାଢ଼ୀ ଚିରିଯାଇ ପାରେ, ପୋଡ଼ିଯାଇ ପାରେ; ଏହି ଦେହ, ହାଡ଼ ମାଉଁସ ପୋଚ ସଡ଼ି ପୋଡ଼ି ଜଳି ଅଙ୍ଗାର ଖତ ହୋଇଯାଇ ପାରେ, କିନ୍ତୁ ଆତ୍ମା ଚିର ଅବିନାଶୀ ! ସେ ନୂତନ ଦେହ— ନୂତନ ସାର୍ଟପେଣ୍ଟ, ସାୟା ଶାଢ଼ୀ ପରି ନୂତନ କଳେବର ଗ୍ରହଣ କରି ପୁଣି ପୁଣି ଜନ୍ମ ହେଉଥିବ ।'

କରତାଳି ଓ ଆନନ୍ଦ କୋଳାହଳରେ ହଲ୍ ଭିତର ଘୁ ଘୁ ହେଲା ।

ଉମା ପୁଣି କହି ଚାଲିଲା—

ସୃଷ୍ଟିର ଏ ମହାନ୍ ସତ୍ୟ, ମହା ମହା ମୁନିମାନଙ୍କର ଏହି ମହାନ୍ ସିଦ୍ଧାନ୍ତର ତାତ୍ପର୍ଯ୍ୟ ଆଜ ଆମ୍ଭମାନଙ୍କୁ ସଂପୂର୍ଣ୍ଣ ଉପଲବ୍ଧି କରିବାକୁ ହେବ ! ତେବେଯାଇ ଏ ଜାତି ତାର ମାତୃଭୂମି ପ୍ରତି ଯୋଗ୍ୟ କର୍ତ୍ତବ୍ୟ କରି ପାରିବ ।'

ବକ୍ତୃତା ଚାଲିଛି । ମଞ୍ଜୁମାଳା ତରବରରେ ଜଗ୍ ରୁ ଓହ୍ଲାଇ ଆସି କବିତା କାନରେ କହିଲା, ସେମାନେ ସିନାମା ଚାଲିଗଲେ ।

'କିଏ କିଏ ?' କବିତା ଖୁବ୍ ଆସ୍ତେ ପଚାରିଲା ।

'ନମିତା, ଉର୍ମିଳା, ସୁରବାଳା ।'

'ଅଯୋଗ୍ୟା ।' କବିତା ନିର୍ମମ ଭାବରେ ଆଖି ତରାଟି କହିଲା ।

'ମୁଁ କଣ କରିବ ? ଏତେ ତ ଡାକିଲି ।'

'କଅଣ କରିବ ? 'ଜାତିର ଡାକରା' 'ଦେଶର ଆହ୍ୱାନ' ବଡ଼ ବଡ଼ କଥା କହୁଛ । ଅଥଚ ମୋ ଗାଁର ଦୁଇ, ତିନୋଟି ଝିଅଙ୍କୁ ତୁମେ ସିନେମା ହଲ୍ ରୁ ଶୂନ୍ୟେ ଶୂନ୍ୟେ ଟେକି ନେଇ ଆସି ପାରିଲ ନାହିଁ ? ତମ ଦେଇ ଆଉ କି କାମ

ହୋଇ ପାରିବ ମୁଁ ବୁଝି ପାରୁନାହିଁ । ଖାଲି ବଡ଼ ବଡ଼ଆଙ୍କ ପାଖରେ ଆଗ ଧାଡ଼ିରେ ମୁହଁ ହଲେଇ ହଲେଇ ବସିବାକୁ, ଖବର କାଗଜରେ ନାଁ ପକେଇବାକୁ ତୁମେମାନେ ପରିଷଦର ସଭ୍ୟା ହୋଇଛ ନା ତମ ଦେଇ ଆଉ କିଛି ହୋଇ ପାରିବ, ଭଗବାନଙ୍କୁ ଜଣା । ହଉ, ଯା ବସି ବସି ଶୁଣ । ନା ସେତକ ବି ହୋଇ ପାରିବ ନାହିଁ ? ମୁଁ ସେମାନଙ୍କୁ କାଲିକି ପଚାରିବି ଯେ !'

ଉମାର ପ୍ରଜ୍ୱଳିତ ତୀକ୍ଷ୍ଣ ଚାହାଁଣିର ଆକର୍ଷଣରେ ଲାଗି ରହିଲା ସହସ୍ର ସହସ୍ର ଶ୍ରୋତୃମଣ୍ଡଳୀଙ୍କ ଏକାଗ୍ର ନଜର । ଉମା ବିହ୍ୱଳିତ କଣ୍ଠରେ କହି ଚାଲିଲା—

'ମୁଁ ଆଉ ଅଧିକ ସମୟ ନଷ୍ଟ କରିବି ନାହିଁ । କଥା କହିବାର ବେଳ ଆଉ ନାହିଁ । କାର୍ଯ୍ୟ କାର୍ଯ୍ୟ କାର୍ଯ୍ୟ— କେବଳ କାମ କରିବାକୁ ହେବ !

ଶୁଣି ଖୁସି ହେବେ, ଖୁବ୍ ଶୀଘ୍ର ମୋତେ ଓ ମୋର ସହକର୍ମିଣୀମାନଙ୍କୁ ହୁଏତ ସିକନ୍ଦ୍ରାବାଦ୍‌ର ସମର ଶିକ୍ଷା ଶିବିରକୁ ଚାଲି ଯିବାକୁ ପଡ଼ିବ । ହୁଏତ ଆପଣମାନଙ୍କୁ ଆଉ ଥରେ ଦେଶ ମାତୃକାର ସାର୍ଥକ ସେବାପାଇଁ ନିବେଦନ କରିବାର ସୌଭାଗ୍ୟ ମୋତେ ମିଳି ନପାରେ । ତେଣୁ ଆଜି ଆପଣମାନଙ୍କୁ, ମୋ ଦେଶର ମା ଭଉଣୀ, ଭାଇମାନଙ୍କୁ ଗୋଟିଏ ଭିକ୍ଷା ମାଗିବି । ଅବଶ୍ୟ ଏ ଭିକ୍ଷା ମୋ ନିଜପାଇଁ ମୁଁ ମାଗିବି ନାହିଁ । ମୁଁ ଏ ଭିକ୍ଷା ମାଗିବି ସେମାନଙ୍କ ପାଇଁ, ଯେଉଁମାନେ, ଯେଉଁ ନିଷ୍ପାପ ଆତ୍ମାଗୁଡ଼ିକ ନିକଟରେ ଏ ଦେଶରେ ଜନ୍ମ ହୋଇଛନ୍ତି କିମ୍ବା ନିକଟ ଭବିଷ୍ୟତରେ ଯେଉଁ ନୂତନ ଯୁଗର ନିର୍ମାତାମାନେ କାନ୍ତ କୋମଳ ଦେହ ନେଇ, ମୋର ମା ଭଉଣୀମାନଙ୍କ ମମତା ମୁଗ୍ଧ କୋଳ ମଣ୍ଡନ କରିବେ, ସେମାନଙ୍କ ପାଇଁ ।'

ଏଥର ଉମା କବାଟର ମୁହଁକୁ ଚାହିଁଲା । କପାଳରେ, ଓଠରେ ଓ ଆଖି ତଳେ କରୁଣ ବିଦଗ୍ଧ ଅନୁନୟର ରାଗିଣୀ ଝରାଇ କହିଲା—

'ସମବେତ ନର-ନାରୀଙ୍କ ସଦୟ ପ୍ରସନ୍ନତା ଜରିଆରେ ଆଜି ମୁଁ ମୋ ଦେଶର କୋଟି କୋଟି କରୁଣାମୟୀ ନାରୀମାନଙ୍କୁ, ତରୁଣୀମାନଙ୍କୁ ବିନମ୍ର ଅନୁରୋଧ କରୁଛି, ବେଳ ଆସି ଯାଇଛି, ଏଥର ସମସ୍ତେ ଏକ ଲୟରେ ମଣିଷ ପଣିଆର ସର୍ବୋଚ୍ଚ ସ୍ତରର ଦିବ୍ୟ ଚେତନା ଭିତରେ ସାଧାରଣ ସ୍ତରର ମନ ଚୈତନ୍ୟକୁ ବୁଡ଼େଇ ଦେଇ ଟିକିଏ ଗାଡ଼େଇ କରି ଅନାନ୍ତୁ, ଏ ଦେଶର ସହର ମଫସଲ, ଗାଁ ଗଣ୍ଡା, ଗଳି କନ୍ଦର ପିଣ୍ଡା ପଦାଣ୍ଡିକୁ ଚାହାଁନ୍ତୁ— କୋଟି କୋଟି,

ନିଷ୍ପାପ ନିଷ୍କଳଙ୍କ ମା ଭଉଣୀଙ୍କ କୋଳରେ ଯେଉଁ ଅସଂଖ୍ୟ ନିର୍ଦ୍ଦୋଷ, ହିଂସା, ଦ୍ୱେଷ ଅହଂକାରଶୂନ୍ୟ ଅମାୟିକ ମଣିଷ ଶିଶୁ ହସି ହସି ଆଖି ମିଟି ମିଟି କରି ଖେଳୁଛନ୍ତି, ସେମାନଙ୍କର ସରଳ ନିର୍ମଳ ଅମୃତବୋଳା ଢଳ ଢଳ ନୟନ-ପଦ୍ମଗୁଡ଼ିକୁ ନିରୀକ୍ଷଣ କରନ୍ତୁ! ସେହି ଅସଂଖ୍ୟ ନିରୀହ ନୟନର ଗୁହାରି ଆଜି ମୋ ଦେଶର ପ୍ରତ୍ୟେକ ସକ୍ଷମ ସମର୍ଥ ତରୁଣ ତରୁଣୀଙ୍କ ଠାରେ କି ମର୍ମସ୍ପର୍ଶୀ କରୁଣ ନିବେଦନ କରୁଛନ୍ତି, ବୁଝନ୍ତୁ । ସେ ଗୁହାରିଗୁଡ଼ିକର ଭାଷା, ସେ ଆତ୍ମ-ନିବେଦନର ଅର୍ଥ ଆଜି ପ୍ରତ୍ୟେକ ଦେଶବାସୀ ସମ୍ପୂର୍ଣ୍ଣ ଉପଲବ୍ଧି କରିବାକୁ ଚେଷ୍ଟା କରନ୍ତୁ ।

ଦୁର୍ବୃତ୍ତ ଚୀନ୍ ସରକାର ଆଜି ନିର୍ଦ୍ଦୋଷ ଭାରତ ଉପରେ ନିର୍ମମ ଆକ୍ରମଣ କରିଛି, ଏହି ସୁନ୍ଦର ଧରଣୀର ରମଣୀୟତାକୁ ଧ୍ୱଂସ କରି ଦେବାକୁ ବସିଛି, ଅଥଚ ସେଥିରେ ଏ ଦେଶର ଶାସନ ଭୂଷୁଡ଼ି ପଡ଼ିବ, ସଂସ୍କୃତି ଲୋପ ପାଇଯିବ, ଏ ଡର ମୋର ନାହିଁ । ମୁଁ ମୋ ବୟସର କି ମୋଠୁଁ ବଡ଼ମାନଙ୍କର ସ୍ୱାଧୀନତା କି ସୌଭାଗ୍ୟର ପ୍ରତିରକ୍ଷା ପାଇଁ ଆତ୍ମବଳୀ ଦେବାକୁ କାହାକୁ କହୁଛି କହୁନାହିଁ । ମୁଁ ନିବେଦନ କରୁଛି, ଏହି ନିଷ୍କଳଙ୍କ ସରଳ, ସୁନ୍ଦର ପଦ୍ମବନର ପ୍ରତିରକ୍ଷା କରିବାକୁ । ଭାରତ ବର୍ଷରେ ଯେଉଁ ମଣିଷ ଶିଶୁମାନେ କାଲି କି ପଅରି ଦିନ, ମାସେ କି ସାତ ମାସ ତଳେ ଭଗବାନଙ୍କ ଅପାର କରୁଣାରୁ ସକଳ ମାନବିକ ସାମର୍ଥ୍ୟ ଓ ବିଭୂତି ନେଇ ଏ ସଂସାରକୁ ଆସିଛନ୍ତି, ସେମାନଙ୍କର ସାଧୁ ପ୍ରାଣ-ପଦ୍ମବନର ପ୍ରତିରକ୍ଷା ପାଇଁ ମୁଁ ଆପଣମାନଙ୍କର ରକ୍ତଦାନ ମାଗୁଛି, ହାଡ଼ ଗୋଡ଼, ମୁଣ୍ଡ ମାଗୁଛି, ସମଗ୍ର ପରମାୟୁ ଓ ନଖ ବାଳ ମାଗୁଛି ।

ଏ କଥା ଭୁଲ ବୋଲି କେହି କହି ପାରିବେ ନାହିଁ ଯେ, ହୁଏତ ମା କୋଳରେ ଆଜି ଯେଉଁ ଶିଶୁମାନେ ଅସହାୟ ଭାବରେ ଜୁଳୁ ଜୁଳୁ କରି ଗୁହାରି ରହିଛନ୍ତି, ଆଗାମୀ ଯୁଗର ପ୍ରକୃତ ମଣିଷ ସମାଜ, ଶ୍ରେଷ୍ଠ ମଣିଷ ଜାତି ସେହି ଅସହାୟ ଶିଶୁମାନଙ୍କ ପୁଷ୍ପକୋମଳ ଜୀବନ-ପଦ୍ମବନ ଭିତରେ ହିଁ ଲୁଚି ରହିଛି । ତେଣୁ ଏହି ଗରିମାମୟ ପଦ୍ମବନର ପ୍ରତିରକ୍ଷା ପାଇଁ ମୁଁ ଆଜି ଆପଣମାନଙ୍କର ଅନ୍ତରାତ୍ମା ସହିତ ମୋ ଅନ୍ତରାତ୍ମାର ଆବେଦନକୁ ଏକାକାର କରିଦେଇ, ଆପଣମାନଙ୍କ ସହିତ ଜଣେ ହୋଇ, ଦନ୍ତରେ ତୃଣ ଧରି କାନ ପାରି ମାଗୁଛି, ମା ଭଉଣୀ, ବାପ ଭାଇ ମୋର, ଦୁର୍ଦ୍ଦିନରେ ଏ ଦେଶର ସହାୟକ ହୁଅ । ସାତ୍ତ୍ୱିକ ଦାନ ଦିଅ । କେବଳ ସୁନା ନୁହେଁ, ଟଙ୍କା ନୁହେଁ, ଅସ୍ତ୍ର ଦାନ ନୁହେଁ; ମୁଁ ମାଗୁଛି, ନିର୍ଲିପ୍ତ ମନ ଦାନ, ଦେହ ଦାନ, ପ୍ରାଣ ଦାନ!

ଗୃହିଣୀ ଜୀବନର ସର୍ବସ୍ୱ, ଜାତିର ଭବିଷ୍ୟତ ଭାଗ୍ୟ, କୋଟି କୋଟି ଟିକି ଟିକି କୋମଳ ଶରୀର, ଅସଂଖ୍ୟ ଶିଶୁ ହୃଦୟ-ପଦ୍ମବନର ପ୍ରତିରକ୍ଷା ପାଇଁ ମୁଁ ଆଜି ପ୍ରତ୍ୟେକ ନଗରବାସୀଙ୍କ ଗୋଡ଼ତଳେ ପଡ଼ି ମାଗୁଛି, ସମସ୍ତଙ୍କର ସର୍ବସ୍ୱ! ଆପଣା ଭିତରେ ଓ ବାହାରେ ଯିଏ ଯାହା ସାଇତି ରଖିଛନ୍ତି, ସବୁ ଦେଇ ଦିଅନ୍ତୁ ଏ ମହା ଜାତିର ରଣଯଜ୍ଞ ପାଇଁ—ଆଜି ମୁଁ ଆପଣମାନଙ୍କ ପକ୍ଷରୁ ଆପଣମାନଙ୍କୁ ଏ ଦାନ ମାଗୁଛି ଆପଣମାନଙ୍କ ପାଇଁ!'

ଉମା ଲୁହ ପୋଛିଲା ।

ଶ୍ରୋତାମଣ୍ଡଳୀ ଉତ୍କଣ୍ଠିତ ହୋଇ କାନ ଡେରିଲେ । ଉମା ଜଣ ଜଣ କରି ଅନେକଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା—

'କବିତା ନାମ୍ନୀ, ହେମ, ମଞ୍ଜୁମାଳା, କନକ, କାଞ୍ଚନ, ସୌଦାମିନୀ, ପଦ୍ମା, ପ୍ରତିଭା, ରାଗିଣୀ, କଲ୍ୟାଣୀ! ମୁଁ ଆଜି ତୁମ୍ଭମାନଙ୍କୁ ମାଗୁଛି, ତମେ ତୁମର ସବଳ ସକ୍ଷମ ସ୍ୱାମୀମାନଙ୍କୁ ଦିଅ, ପୁଅ ଭାଇମାନଙ୍କୁ ଦିଅ, ନିଜ ନିଜ ଦେହ ଓ ଜୀବନ ଦିଅ । ଏହି ମହା ଜାତିର ପ୍ରତିରକ୍ଷା ପାଇଁ ମୋର ଏହି ଗୋଟିଏ କଥା ରଖ । ପାରିବ ଭଉଣୀଗଣ ?

ହିନ୍ଦୁ ହୁଅ କି ଖ୍ରୀଷ୍ଟାନ୍ ହୁଅ, ମୁସଲମାନ ହୁଅ କି ଜୈନ ହୁଅ କି ଆଉ ଯାହା ହୁଅ— ମୁଁ ମହାଭାରତର ମହା ଜାତି ପକ୍ଷରୁ ପୁଣି ଥରେ କାନିପାତି ମାଗୁଛି, ଯାର ଯାହା ଅଛି ଦେଇଦିଅ ଭଉଣୀ ଦେଇଦିଅ! ଆଜି ଆଉ କୁଣ୍ଠିତ ହୁଅନାହିଁ କି କୃପଣ ହୁଅନାହିଁ । ସମଗ୍ର ମାନବ ସମାଜ ଆଜି ସୃଷ୍ଟିର ଭବିଷ୍ୟତ ପ୍ରତିରକ୍ଷା ପାଇଁ ତାକୁ ଫଟେଇ ଡାକ ପକେଇଛି ।

ଆଉ ବିଳମ୍ବ କରନାହିଁ । ଏଇଠି, ଏହିକ୍ଷଣି କୁହ, କୁହ ଭଉଣୀ, କିଏ କଣ ଦେଇ ପାରିବ କୁହ ।

ମରିବାକୁ ଡରୁଛ ? ଦୁଃଖକୁ ଡରୁଛ ?

ମରଣ କଣ ? ଦୁଃଖ କଣ ? ମରଣ ପରା ନୂତନ ଜନ୍ମର ପୂର୍ବ ସୂଚନା! ଦୁଃଖ ପରା ସୁଖର ତଳ ପାହାଚ! ଭାରତର ପବିତ୍ର ଐତିହ୍ୟ ହିଁ ଆମ୍ଭମାନଙ୍କର ଜୀବନ । ମୁଁ ଆଉ ଅଧିକଟା ବୁଝେଇବି କଣ ?

ଆଉ ବିଳମ୍ବ କର ନାହିଁ । ଉଠ! ଠିଆ ହୁଅ । କୁହ! ହଁ, କୁହ—'

ଟେବୁଲ ଉପରେ ଖାତା ମେଲାଇ, କଲମର ଖାପ ଫିଗୁଲା କରି ସେ ତଳମୁହାଁ ହୋଇ ଅନୁନୟ କଲା— କୁହନ୍ତୁ !

'କବଡ଼ା ଗଡ଼ନାୟକ ।' କବଡ଼ା ଠିଆ ହୋଇପଡ଼ି କହିଲା ।

'କଣ ଦେବ ?' କବଡ଼ାର ମୁହଁକୁ ଗ୍ରହିଁ ଉମା ଶଙ୍କିତା ହେଲା ।

'ଜୀବନ !'

'କପରି ?'

'ଯୁଦ୍ଧ ଭୂମିକୁ ଯାଇ, ସେନା ବାହିନୀରେ ଯୋଗଦେଇ ।'

ଉମା ମୁରୁକି ହସି ପଚାରିଲା, ତୁମର ସ୍ୱାମୀ ଅଛନ୍ତି ?

'ଅଛନ୍ତି ।' କବଡ଼ା ପାଟି କାମୁଡ଼ିଲା ।

'ସେ ଯଦି ମନା କରିବେ ?'

'ହସପାତାଲର ଲୁହା ଖଟ ଉପରେ ପ୍ରାଣବାୟୁ ଉଡ଼ିଗଲାବେଳେ କେହି ମନା କରି ପାରନ୍ତି ନାହିଁ ! ଧଉଳିବ, ହିମାଳୟର ଶୁଭ୍ର ଧବଳ ବରଫ ଭିତରେ ଏ ଦେହ ପୋତିହୋଇ ଯାଇଛି । ସେ ଇଚ୍ଛା କଲେ, ଆଉ ଜଣକୁ ବାହା ହୋଇ ପାରନ୍ତି । ଯାହାହୁଏ ...'

'ଆଚ୍ଛା, ଆଉ ?'

'ବୃନ୍ଦାବନ ବିପାଠୀ ।'

'କଣ ଦେବେ ?'

'ଜୀବନର ସକଳ ସମ୍ଭାବନା ।'

'କପରି ?'

'କଲେଜରେ ତ ଏନ୍. ସି. ସି.ରେ ଯୋଗ ଦେଇଛି । ବାକି ଯେତିକି ସମୟ ପାଇବି, ଘର ଘର ବୁଲି ଯୁବକ ଯୁବତୀମାନଙ୍କୁ ଭେଟିବି । ଦେଶରକ୍ଷା ପାଇଁ କିଏ କଣ କରି ପାରିବେ, କରିବା ପାଇଁ ମତାଇବି । ବୁଝେଇବି । କରେଇବି ତ । ସେଥିପାଇଁ ଆବଶ୍ୟକ ହେଲେ ମୋ ଜୀବନର ସମସ୍ତ ସମ୍ଭାବନାକୁ ଅଜାଡ଼ି ଦେବି ।'

'ବେଶ୍, ଆଉ ... ?'

'ବିନୋଦିନୀ ଖରସଦା !'

'କଣ ଦେବେ ?'

'ସବୁ ।'

'କପରି ?'

'ପ୍ରତିରକ୍ଷା ପରିଷଦ ଯେତେବେଳେ ଯାହା କରିବାକୁ କହିବ, କରିବି । ଏ ଦେହ, ମନ ପ୍ରାଣ ଉପରୁ ମୋର ସମୁଦାୟ ଅଧିକାର ମୁଁ ଟେକି ଦେଉଛି ।'

'ସାବାସ୍ ।'

ଚାଲିଲା ଏକ ପରେ ଅନେକ । ଶହେ ଟପିଗଲାଣି ଜଣ ତରୁଣୀଙ୍କର ସମର୍ପଣ ପତ୍ର ଲେଖୁ ଲେଖୁ ରାତି ଏଗାର ବାଜିଲା । ତଥାପି ଅକ୍ଳାନ୍ତ ଜନତା ବସି ରହିଥିଲେ ଏକ ପରମ ଉତ୍ସୁକତା ଭିତରେ । ଉମା ହସ ହସ ମୁହଁରେ କାମ କରି ଚାଲିଥିଲା ।

ହଠାତ୍ ମନେ ପଡ଼ିବାରୁ ଉମା କଲମ ଥୋଇଦେଇ ଚାରିଆଡ଼କୁ ଆଖି ବୁଲାଇଲା । ଏ କୋଣ ସେ କୋଣ ଖୋଜସାରି ସେ କବିତାକୁ ହାତଠାରି ଡାକି ପଚାରିଲା, ମଞ୍ଜୁମାଳା କାହିଁ ?

କବିତା ଚାରିଆଡ଼କୁ ନଜର ପକେଇ ସାରି କହିଲା, କାହିଁ, ନାହିଁ ତ!

ହେମ ସେ ପାଖରେ ଠିଆ ହୋଇଥିଲା । ଏମାନଙ୍କ କଥା ଶୁଣି ସାରି ନାକ ଠିଆ କରି କହିଲା, ସିଏ ଆଉ ଅଛି ! ନାଁ ଲେଖିବା ଯିମିତି ଆରମ୍ଭ ହୋଇଚି, ଭାଗିଲାଣି କୁଆଡ଼େ କି କୁଆଡ଼େ ।

ଯେଉଁମାନଙ୍କ କାନରେ ଏ କଥା ପଡ଼ିଲା, ହି ହି ହୋଇ ହସି ଉଠିଲେ ।

ଉମା ଗମ୍ଭୀର ହୋଇ ତଳକୁ ଚାହିଁଲା । ଉପସ୍ଥିତା ମହିଳାମାନଙ୍କ ମୁହଁକୁ ଅନେଇଲା । କବିତା ପଛେଇ ପଛେଇ ଚାଲି ଆସିଲା ନିଜ ଆସନ ଉପରକୁ ।

ଏଥର ନାରୀମାନଙ୍କ ଉପରୁ ମୁହଁ ଫେରାଇ ନେଇ ବହ୍ନିଳତ ଦୃଷ୍ଟିରେ ଉମା ପୁରୁଷମାନଙ୍କୁ, ତରୁଣମାନଙ୍କୁ ଅନେଇଲା ।

ଅସୀମ ଧୈର୍ଯ୍ୟ ମନ ମଧ୍ୟରେ ଠୁଳ କରି ଗୌରହରି ଗମ୍ଭୀରତ ପଚାରିଲା, 'ଆପଣ ନିଜେ କଣ କରିବେ ଦୟାକରି ଘୋଷଣା କରିବେ କି ? ଯେଉଁମାନେ ପରଜୀବନ ସହିତ ଖେଳିବା ନିଶାରେ ରାଜନୀତି କରନ୍ତି, ପରର ଜୀବନ ମାଗିବାର ଅଧିକାର ସେମାନଙ୍କର ନାହିଁ ।'

କେଜାଣି କାହିଁକି ଉମାର ମନ ତରଳି ଗଲା । ସେ ତାର ଧନୁ ପରି ଭ୍ରୂଲତା ଉପରୁ ଝାଳ ପୋଛିନେଇ ମୁରୁକି ମୁରୁକି ହସିଲା । ମୁହଁ ଉଠେଇ ଆଖିପତା ଖେଳେଇ ଖେଳେଇ କହିଲା, ସାଧୁ ପ୍ରଶ୍ନ ! ମୁଁ ସେ କଥା କହି ସାରିଛି କି କହିବାକୁ ଭୁଲି ଯାଇଛି ମୋର ମନେ ନାହିଁ । ଯାହାହେଉ କ୍ଷମା ପ୍ରାର୍ଥନା ସହି ମୁଁ ଏଠି କହିବାକୁ ଚାହେଁ ଯେ, ଏ କଥା ଘୋଷଣା କରିବାକୁ ମୁଁ ଆଗରୁ ସଂକଳ୍ପ କରିଥିଲି । ଧୃଷ୍ଟତା ମାର୍ଜନା କରିବେ, ଯେଉଁ ଦିନଠାରୁ ଜନ୍ମଦାତ୍ରୀ ବୋଉର ନଜର ବନ୍ଦୀରୁ ଏ ଦେହକୁ ମୁକ୍ତ କରିଦେଲି, ସେହି ଦିନଠାରୁ ଏ ଦେହ, ଏ ମନ ଓ ଏ ଜୀବନ ଜନନୀ ଜନ୍ମଭୂମିର ଚରଣ ତଳେ ପରିପୂର୍ଣ୍ଣଭାବେ ସମର୍ପଣ କରି ସାରିଛି । ଜାଣେନା ଏ ଜନମରେ ଚିର କୁମାରୀ ରହି ଦେଶ ମାତୃକାର ସେବା କରି ପାରିବି କି ନାହିଁ, କିନ୍ତୁ ଯଦି ବିବାହ କରିବାକୁ ହୁଏ, ବିବାହ କରିବି ଏମିତି ଜଣେ ଯୁବକଙ୍କୁ, ଯିଏ କି ଦେଶରକ୍ଷା ପାଇଁ ଜୀବନ ପଣ କରି ସଂଗ୍ରାମ କରିସାରି ବୀରୋଚିତଭାବେ ବିଜୟୀ ହୋଇ ଫେରିଥିବେ । ସେ ହାଡ଼ି ହୁଅନ୍ତୁ, ପାଣ ହୁଅନ୍ତୁ, ସେ ପଣ୍ଡିତ ହୁଅନ୍ତୁ, ମୂର୍ଖ ହୁଅନ୍ତୁ କି ସେ ବିକୃତ ହୁଅନ୍ତୁ କି ଶ୍ରୀସମ୍ପନ୍ନ ହୁଅନ୍ତୁ; ଏହାହିଁ ମୋର ପ୍ରତିଜ୍ଞା ! ଆବଶ୍ୟକ ବେଳେ ଅସ୍ତ୍ର ଧରି ସମ୍ମୁଖ ସଂଗ୍ରାମରେ ଝାସଦେବା, ମୋ ପକ୍ଷରେ ଗୋଟାଏ କଥା ନୁହେଁ, ଏକ ଅତି ସାଧାରଣ କର୍ତ୍ତବ୍ୟ ମାତ୍ର !'

ଗନ୍ତାୟତ ସଁ ସଁ ହୋଇ ଆଗେଇ ଆସି କହିଲା, ଲେଖନ୍ତୁ ! ମୁଁ ଚାହେଁ, ପଦାତିକ ବାହିନୀରେ ଯୋଗ ଦେବାକୁ ।

'ଧନ୍ୟ ! ଆଉ ?'

'ମୁଁ ଜଳ ବାହିନୀ !'

'ମୁଁ ଆକାଶ ବାହିନୀ ।'

'ମୁଁ ମଧ୍ୟ ।'

ଚାଲିଲା । ରାତି ସାଢ଼େ ଏକରେ କବିତା ଓ ଉମା ଏକା ସାଙ୍ଗରେ ଘରକୁ ଫେରିଲେ । କଂଗ୍ରେସ ଜିପ୍‌ଟି ସେମାନଙ୍କୁ ଘରେ ଛାଡ଼ିଦେଇ ରାତ୍ରୀର ଘନ ଅନ୍ଧକାର ଭିତରେ ମିଳେଇ ଗଲା ।

ଗଡ଼ନାୟକେ ଶୋଇ ପଡ଼ିଥିଲେ । ତାରାମାନେ ହସୁଥିଲେ ଆକାଶର କୋଳରେ । କବିତା କବାଟ କଲା । ଉମା ଘରେ ପଶିଲା । ବୋଉଙ୍କ ଛଡ଼ା ଘରର ଅନ୍ୟ ସମସ୍ତେ ଘୁମୁଡ଼ି ମାରି ମାରି ଶୋଇ ପଡ଼ିଥିଲେ ।

ଏଥର ଦଫା ଶହ ଶହ ତରୁଣ ତରୁଣୀ ଭାରତୀୟ ପ୍ରତିରକ୍ଷା ବାହିନୀର ବିଭିନ୍ନ ବିଭାଗରେ ତାଲିମ୍ ପାଇବା ପାଇଁ ମନୋନୀତ ହୋଇଛନ୍ତି । ଏ ସମ୍ବାଦ ନେଇ ସହରରେ ଶୃଙ୍ଖଳା ସୃଷ୍ଟି ହୋଇଛି । ସବୁଠୁ ମଜା କଥା ହେଉଛି, ମଞ୍ଜୁମାଳା ଦୁଇ ଦିନ ହେଲା କାହାକୁ ନ କହି ଆତ୍ମଗୋପନ କରିଥିବା ଓ ଉମା ବହୁ ଚେଷ୍ଟାସତ୍ତ୍ୱେ ମନୋନୀତା ହୋଇପାରି ନଥିବା ସମ୍ବାଦ ପ୍ରଚାରିତ ହୋଇ ଯାଇଛି । ଡାକ୍ତର ପରୀକ୍ଷାରେ ଉମା ସଫଳ ହୋଇ ପାରିଲା ନାହିଁ । ଯେତେ ପଚାରିଲେ ମଧ୍ୟ ଡାକ୍ତର କାରଣ କହିଲେ ନାହିଁ । ପ୍ରଚାର ହୋଇଛି ଯେ, ଗୋପନରେ ଗଡ଼ନାୟକ ଫୁସୁଲେଇ ପଚାରିବାରୁ ଡାକ୍ତର କୁଆଡ଼େ ନିତାନ୍ତ ବାଧ୍ୟ ହୋଇ କହିଛନ୍ତି, ସେ ଜଣେ ସମ୍ଭ୍ରାନ୍ତ ଘରର ଝିଅ । ତେଣୁ ତାଙ୍କର ଅନୁପଯୁକ୍ତତା ସମ୍ପର୍କରେ ସବୁ କିଛି ପ୍ରକାଶ କରିବା ଉଚିତ ନୁହେଁ ।

ସତକୁ ସତ ଡାକ୍ତର ମନା କରିବାରୁ ଉମା କାନ୍ଦି କାନ୍ଦି ଘରକୁ ଫେରି ଆସିଲା । ଗଡ଼ନାୟକ ତାର ପଛେ ପଛେ ଯାଇ ଅନେକ ବୁଝାଇଲେ । ସେ କହିଲେ, ଅସଲ କଥା ହେଉଛି, ତୁମେ ବର୍ତ୍ତମାନ ପରିସ୍ଥିତିରେ ଜୟପୁର ଛାଡ଼ି ଚାଲିଯିବା କେହି ପସନ୍ଦ କରୁନାହାନ୍ତି । ବଡ଼ ଲୋକମାନେ ତୁମକୁ ମନୋନୀତ ନ କରିବାକୁ ଗୋପନରେ କର୍ତ୍ତୃପକ୍ଷଙ୍କୁ ଅନୁରୋଧ କରିଥିଲେ । ତେଣୁ ଏପରି ଘୋଷଣା କରାଯାଇଛି । ପ୍ରକୃତରେ ଭାବିଦେଖ ତ ଉମା, ତୁମେ ଯଦି ଏକ୍ଷଣି ଚାଲିଯିବ, ଲୋକଙ୍କ ଭିତରେ ଜାଗରଣ ସୃଷ୍ଟି କରିବ କିଏ? ତୁମେ ଯିବ— କିନ୍ତୁ ସେ ସମୟ ଆସିବା ଯାଏ ଅପେକ୍ଷା କର । ଏଠାର କାମ ସରିଯାଉ ।

'ଦେଶର ଶତ୍ରୁ ବିରୁଦ୍ଧରେ ଅସ୍ତ୍ରଧାରଣ କରିବାକୁ କବିତା ନାମୀ ଯିବେ, ହେମ ଯିବ, ସମସ୍ତେ ଯିବେ, ଅଥଚ ମୁଁ ଏତେ ବଡ଼ ବଡ଼ କଥା କହିସାରି, ଯାଇ ପାରିଲି ନାହିଁ! ଏହା ଦୁର୍ଭାଗ୍ୟ ଛଡ଼ା ଆଉ କଣ!' ଉମା ମନେ ମନେ ଅସୀମ କଷ୍ଟ ଅନୁଭବ କରିବାକୁ ଲାଗିଲା ।

ଏ ଖବର ପାଇ ବୋଉ ଗମ୍ଭୀର ହେଲେ । ବାପା କାହାକୁ କିଛି କହିଲେ ନାହିଁ । ଆଜକାଲ ତାଙ୍କର କଣ ହୋଇଛି କେଜାଣି, ଉମାକୁ ଦେଖିଲେ କିମ୍ବା ତାର କଥା ପଡ଼ିଲେ ସେ ବେଶ୍ ଉଦାସୀନ ହୋଇ ପଡ଼ୁଛନ୍ତି । ସ୍ନେହରେ କିଛି ଆଳାପ ଆଲୋଚନା କରିବାକୁ ଗଲେ ଆଡ଼େଇ ହୋଇ ଚାଲି ଯାଉଛନ୍ତି । ବାପାଙ୍କର ଏପରି ଖାପଛଡ଼ା ଆଚରଣରେ ଉମାର ମନରେ ଆଘାତ ଲାଗୁଛି । କିନ୍ତୁ ମନର କଥା ଖୋଲି କହିବା ପାଇଁ ସେ ବାପାଙ୍କୁ ବାଧ କରିପାରୁ ନାହିଁ । ମନ କୁହୁକୁଛି ।

ମନ ଦୁଃଖରେ ଉମା ତାର ଶୋଇବା ଘରେ ବସିଥିଲା । ବୋଉ ଆସି କହିଲେ, ଏକ୍ଷଣି ଯୁଦ୍ଧକୁ ଗଲୁନାହିଁ, ଭଲ ହେଲା । ବଳ ବୟସ ତ ସରିଯାଉ ନାହିଁ । ଏଥର ନ ହେଲା ଆଉ ଥରକୁ ଯିବୁ । କିନ୍ତୁ ଝିଅ ଜୀବନରେ ମାନ ସନମାନ ଥରେ ଚାଲିଗଲେ ଆଉ ଫେରିଆସେ ନାହିଁ । ଚିରକାଳ ଛି ଛିକାରରେ ଦିନ କଟେ ।

'ତୁ କଣ କହୁଛୁ ବୋଉ ?' ଉମା ଉତ୍କଣ୍ଠିତା ହୋଇ ପଚାରିଲା ।

'ତୋ ଉପରେ ମୋର ଯଥେଷ୍ଟ ଭରସା ଅଛି ଉମା । ମୁଁ ତୋତେ ଭଲ କରି ଚିହ୍ନିଛି । ହେଲେ ଲୋକେ କହୁଛନ୍ତି, ତୁ ଅବାଟରେ ଯାଉଛୁ । ଆଜି ସକାଳେ ଚା ଦୋକାନରେ କଥା ପଡ଼ିଥିଲା, ଗଡ଼ନାୟକ ତା ସ୍ତ୍ରୀକୁ ଯୁଦ୍ଧକୁ ପଠେଇ ଦେଇ ତୋତେ ଆଦରି ନେବ ବୋଲି ସ୍ଥିର କରିଛି । ଏ କଥା ତୋ ବାପା ଶୁଣି ଆସିଛନ୍ତି । ତୋ ଭଳି ଝିଅ ଜନମ କରି ଶେଷରେ ଏ କଥା ମଧ୍ୟ ଶୁଣିବାକୁ ଥିଲା ।'

ଉମାର ବୋଉ କାନ୍ଦି ପକେଇଲେ । ଉମା ଗାଲରେ ହାତ ଦେଲା । ସତେ କି ତାର ତାଳୁରେ ନିଆଁ ଲାଗିଗଲା । ଘଡ଼ିଏ ପର୍ଯ୍ୟନ୍ତ ସାରା ସଂସାର ତାକୁ ଅନ୍ଧାର ଦିଶିଲା । ସେ ଆଉ ପାଟି ଫିଟେଇ ପାରିଲା ନାହିଁ । ଲମ୍ବ ହୋଇ ଖଟ ଉପରେ ଗଡ଼ି ପଡ଼ିଲା । ଲୁହ ପୋଛି ପୋଛି ବୋଉ ତାର ପିଠି ଆଉଁସି ଆଉଁସି ବସି ପଡ଼ିଲେ ।

ବିଦ୍ୟାଧର ବାବୁ ଏ କଥା ଶୁଣିଲାବେଳୁ କଣ କରିବେ କଣ ନ କରିବେ ହେଉ ହେଉ କଂଗ୍ରେସ ଅଫିସକୁ ଟେଲିଫୋନ୍ କରି ସଭାପତିଙ୍କୁ କହିଲେ, ଏ ସବୁ କିଛି ଭଲ ହେଉନାହିଁ । ଗୋଟାଏ କୂଳ ଝିଅକୁ ଘରୁ ଦାଣ୍ଡକୁ ନେଇ ଏପରି

ବଦନାମ କରେଇବା ଉଚିତ୍ ହେଉନାହିଁ । ଏଣୁ ଏଣିକି ଆପଣମାନେ ତା ପଛରେ ଆଉ ଲାଗନ୍ତୁ ନାହିଁ । ସେ ଘରୁ ଆଉ କୁଆଡ଼େ ନ ଯାଉ । ଏହା ମୋର ଆନ୍ତରିକ ଇଚ୍ଛା ।

କଂଗ୍ରେସ ସଭାପତି ହସିଲେ । କହିଲେ, ଏ ସବୁ ମିଛ କଥା, ବାଜେ କଥା । ଏ ସମସ୍ତ କୁତ୍ସାରଟନା ସେହି ବିରୋଧୀ ଗୋଷ୍ଠୀର କାରବାର । ଆପଣ ନିତାନ୍ତ ସରଳ ଭାବରେ ଯଦି ଏପରି ସମ୍ବାଦଗୁଡ଼ିକ ଗ୍ରହଣ କରିବେ, ତା ହେଲେ ତ ଆମେ ନାଚାର । ଆପଣ ଅପେକ୍ଷା କରନ୍ତୁ । ମୁଁ ଆଜି ଗୋଇନ୍ଦା ବିଭାଗର ଦୃଷ୍ଟି ଆକର୍ଷଣ କରିବି । ସେମାନେ କଥାର ମୂଳ ଅନୁସନ୍ଧାନ କରି ତଥ୍ୟ ପ୍ରକାଶ କରିବେ । ଆବଶ୍ୟକ ହେଲେ ଏ କୁତ୍ସାରଟନାକାରୀଙ୍କୁ ଧରାଇ ଦିଆଯିବ । ତଥାପି ବିଘ୍ନରାଜ ବାବୁ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । କିନ୍ତୁ ଅଧ୍ୟାପକ ଗଡ଼ନାୟକଙ୍କ ଶୁଦ୍ଧ ଚରିତ୍ର ଉପରେ ତାଙ୍କର ଅଟଳ ବିଶ୍ୱାସ ଯେମିତି ଥିଲା, ପ୍ରାୟ ସେମିତି ଅତୁଟ ରହିଥିଲା ।

ଘଟନାକ୍ରମେ ସେ ନିଜ ଝିଅକୁ ସନ୍ଦେହ କରି ପାରନ୍ତି କିନ୍ତୁ ଗଡ଼ନାୟକଙ୍କୁ ସେଥିରେ ଯୋଡ଼ିଲାବେଳକୁ ତାଙ୍କର ମନ ମାନୁନାହିଁ । ଖୁବ୍ ଜୋର୍‌ଦେଇ ଅନ୍ତର କହୁଛି, ଗଡ଼ନାୟକର ଚରିତ୍ର ନିଷ୍କଳଙ୍କ । ସେପରି ବିଜ୍ଞ, ସ୍ଥିତପ୍ରଜ୍ଞ ଲୋକଦ୍ୱାରା ଏ ପ୍ରକାର କ୍ରିୟା କଳାପ ଅସମ୍ଭବ କଥା । କିନ୍ତୁ ଏପରି ଗୁଜବ ଉଠିଲା କାହିଁକି ? ସହରରେ ଆଉ କେତେ ଝିଅ, କେତେ ଯୁବକ, କେତେ ଅଧ୍ୟାପକ୍ ନାହାନ୍ତି ? ହେଲେ ତାଙ୍କର ଝିଅ ଓ କେବଳ ଅଧ୍ୟାପକ ଗଡ଼ନାୟକଙ୍କ କଥା ହିଁ କାହିଁକି ଉଠିଲା ?

ତାଙ୍କର ମନ ଭାରି ବିକଳ ହେଲା । ସେ କିଛି ସ୍ଥିର କରି ପାରିଲେ ନାହିଁ; ମନ କଥା ମନରେ ରଖି ବିଲ ବାଡ଼ି କଥା ବୁଝିବାକୁ ଗାଁକୁ ଚାଲିଗଲେ ।

ଉମା ଅନେକ ସମୟ ଧରି ଖଟ ଉପରେ ପଡ଼ି ରହିଲା । ସେ ଯେତେବେଳେ ବୋଉଙ୍କର ବହୁ ଅନୁନୟଭରା ଆଦର ଅନୁରୋଧରେ ଖଟରୁ ଉଠିଲା, ତାର ମନେହେଲା, ସତେ କି ମାସେ ହେଲା ତାକୁ ଭୀଷଣ ଜର ହୋଇଥିଲା । ଏବେ ଜର ଓହ୍ଲେଇ ଯାଇ ସର୍ବାଙ୍ଗରୁ ଅସରା ଅସରା ଝାଳ ବୋହି ଯାଉଛି । ସେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ୁଛି । ମୁଣ୍ଡ ଭିତରେ, ମନ ଭିତରେ ସବୁ ଫାଙ୍କା ଫାଙ୍କା ଲାଗୁଛି ।

ଦ୍ୱିପହର ବେଳକୁ କବିତା ଆସିଲା । ଉମା ସେମିତି ନିସ୍ତେଜ ହୋଇ ବସିଥିଲା । ଉମାର ଉତ୍ସାହହୀନ ମୁହଁକୁ ଚାହିଁ କବିତାର ଗୁଣ୍ଡିଆ ଦାଉଁ କଲା । ସେ ଇତସ୍ତତଃ ହୋଇ ପଚାରିଲା, ଉମା, କଥା କଣ ?

'କିଛି ନାହିଁ ।' ସେ କିଛି ନ କହିବାକୁ ଚେଷ୍ଟା କଲା । କବିତା ଭାବିଲା, ତାକୁ ଏକୁଟିଆ ଛାଡ଼ି ସେ, ହେମ, ପ୍ରଭୃତି ସାଙ୍ଗ ଝିଅମାନେ 'ମହିଳା ସାହାଯ୍ୟକାରୀ ବାହିନୀ' (Women's Auxiliary Force)ରେ ଯୋଗଦେବାକୁ ଚାଲିଯାଉ ଥିବାରୁ ଏବଂ ଉମା ନିଜେ ମେଡ଼ିକେଲ୍ ଟେଷ୍ଟରେ ବିଫଳ ହୋଇଥିବାରୁ ମନଦୁଃଖ କରୁଛି ।

ହସି ହସି କବିତା କହିଲା, ତମେ କଣ ଭାବୁଛ, କେଜାଣି । କିନ୍ତୁ ଗର୍ବରେ ଆଜି ମୋର ଛାତି ଫୁଲି ଉଠୁଛି । କାହିଁକିନା ମୋର ଅତି ଆପଣାର ଜଣେ ମନସ୍ୱୀ ସାଙ୍ଗ ତରୁଣୀର ଉଦ୍ୟମରେ, ଉମାର ନେତୃତ୍ୱରେ ଆଜି ଶହ ଶହ ପୁଅ ଝିଅ ଜାତିର ପ୍ରତିରକ୍ଷା ପାଇଁ ଆତ୍ମନିବେଦନ କରି ପାରିଛନ୍ତି, ଜୀବନ ପଣ କରି ଘରୁ ଗୋଡ଼ କାଢ଼ି ବାହାରି ପଡ଼ିଛନ୍ତି । ତମେ ନିଜେ ନଯାଇ ପାରିଲ ନାହିଁ । କରିବା ଠାରୁ କରେଇ ଦେବା ଲୋକ ବଡ଼ ।

ଉମା କବିତାର କଥାରେ ଆଦୌ ଉତ୍ସାହିତ ହେଲାନାହିଁ । ସେ ଅନ୍ୟ ମନସ୍କ ଭାବରେ ନିସ୍ତେଜ କଣ୍ଠରେ କହିଲା, ଭଗବାନଙ୍କର ଇଚ୍ଛା— ଯାହା ହେବାର ଅଛି ହେଉ । ତୁମେ ଯାଅ କବିତା ନାନୀ । ତମେ ଏ ଦେଶରେ ନାରୀ ଜାତିର ଟେକ ରଖ । ମୁଁ ଆଉ ମୋର ଏ ଅଭିଯୁକ୍ତ ଜୀବନ ନେଇ ଅଧିକ କାଳ ଏଠି ରହି ପାରିବି ନାହିଁ । ଏହି ଅସାଧୁ ମଣିଷ ସମାଜ ଭିତରେ ଚଳି ପାରିବି ନାହିଁ ।

କବିତା ଚମକି ପଡ଼ିଲା । ଉମା ଭଳି ଝିଅ ମୁହଁରୁ ଆଜି ଏପରି କଥା ବାହାରୁଛି କାହିଁକି ? ସେ ସାଉଁଳେଇ ପଚାରିଲା, ଆଜି ତମେ କାହିଁକି ଏତେ ବିମର୍ଷ ଦେଖାଯାଉଛ ଉମା ?

'ଶତ୍ରୁପକ୍ଷ ମାତି ଉଠିଛନ୍ତି । ମନଗଢ଼ା କୁତ୍ସାରଟନାର ବେଳ ଆସି ଯାଇଛି । ଘରେ ଘରେ ମୋର ବଦନାମ ପ୍ରଚାର କରାଯାଇଛି । ସମ୍ମୁଖୀନ ହେବି କି ପଳାୟନ କରିବି, ମୁଁ ଆଜି ଠିକ୍ କରିପାରୁ ନାହିଁ ।'

ବୋଉ ମୁହଁରୁ ଶୁଣିଥିବା ସମସ୍ତ କଥାର ମର୍ମ ଉମା ବୁଲେଇ ବଙ୍କେଇ ବୁଝେଇ ଦେଲା । କବିତା ବ୍ୟଥିତା ହୋଇ କହିଲା, ଏପରି ହୁଏ । ମନେ ଅଛିନା ସେ ଦିନ ଦେବାଳୟରେ କହିଥିଲି, ଦିନେ ଠିକ୍ ଏମିତି ଗୋଟିଏ ଅବସ୍ଥାରେ ପଡ଼ି ବିଷପାନ କରି ଆତ୍ମହତ୍ୟା କରିବାକୁ ଶ୍ରେୟ ମଣିଥିଲି । ମଣିଷ ସମାଜର ସମୂହ ମଙ୍ଗଳ ପାଇଁ କାମ କରିବାକୁ ହେଲେ, ନ୍ୟସ୍ତସ୍ୱାର୍ଥ ଲୋକମାନଙ୍କର ଘୋର ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିବ । ପ୍ରତି ମୁହୂର୍ତ୍ତରେ ସେମାନେ ସୃଷ୍ଟି କରୁଥିବା ପ୍ରତିବନ୍ଧକଗୁଡ଼ିକୁ ଭ୍ରୂକ୍ଷେପ ନ କରି ଚାଲିବାକୁ ହେବ । ଏଥିପାଇଁ ସର୍ବସାଧାରଣଙ୍କୁ ଦୋଷ ଦେଇ ନର-ନାରାୟଣଙ୍କ ସେବାରୁ ଓହରି ଯିବା ଠିକ୍ ନୁହେଁ । ଅସଂଯତ ଜନମତକୁ ଯଥାର୍ଥ ଭାବରେ ପରିଚାଳିତ କରିବା, ନିୟନ୍ତ୍ରିତ କରିବା ମଧ୍ୟ ଗୋଟିଏ ବଡ଼ କର୍ତ୍ତବ୍ୟ ।

କଟକ ସହରରେ ମୁଁ ଯେତେବେଳେ ନୃତ୍ୟ, ସଂଗୀତରେ ସର୍ବଶ୍ରେଷ୍ଠ କଳାକାର ବୋଲି ବିବେଚିତ ହେଉଥିଲି, ସେତିକିବେଳେ ମୋ ନାମରେ ମଧ୍ୟ ଏପରି କଳଙ୍କର କଳା ବୋଳା ଯାଇଥିଲା । ବୋଉର ଉଦ୍ୟମ ଓ ଗଡ଼ନାୟକଙ୍କର ହୃଦୟବତ୍ତା ବିନା ମୋର ବଞ୍ଚି ରହିବା ଆଜି ସମ୍ଭବ ହୋଇପାରି ନଥାନ୍ତା । ତୁମେ ଭାଙ୍ଗି ପଡ଼ିଲେ ଚଳିବ ନାହିଁ ଉମା ! ନିଜକୁ ଲୁଚେଇ ନିଜ କର୍ମ ପରିସରକୁ ସଂକୁଚିତ କରିଦେଇ ତମେ ଏହି ସାମାଜିକ ଶତ୍ରୁମାନଙ୍କ ଅପପ୍ରଚାରର କବଳରୁ ନିଜକୁ ବଞ୍ଚାଇ ଜୀବନକୁ ଗରିମାମୟ କରି ପାରିବ ନାହିଁ । ଜନତାର ଆହୁରି ନିକଟକୁ ଯାଇ, ତାଙ୍କର ହୃଦୟ ନିକଟରେ ତମର ବ୍ୟକ୍ତିତ୍ୱକୁ ଆହୁରି ଉନ୍ମୁକ୍ତ କରି ଦେବାକୁ ହେବ । ତୁମ ହୃଦୟ ଓ ମନକୁ ଆହୁରି ପରିବ୍ୟାପ୍ତ କରି ଦେବାକୁ ପଡ଼ିବ । ତେବେ ଯାଇ ଜନତାର ପ୍ରତ୍ୟକ୍ଷ ଜ୍ଞାନ ନିକଟରେ ଏମାନଙ୍କର ଏହି ସମସ୍ତ କୁପ୍ରଚାରଣା ପାଣି ଫାଟିଯିବ । ସେମାନେ ନିଷ୍କ୍ରିୟ ହୋଇ ପଡ଼ିବେ ।

କବିତାର ବକ୍ତବ୍ୟ ଶେଷ ହୋଇ ନଥିଲା । ଉମାର ବୋଉ ଆସି କହିଲେ, ବିଭୁ ବାବୁ ଆଉ କିଏ ଦି ଜଣ ଦାଣ୍ଡଘରେ ଅପେକ୍ଷା କରିଛନ୍ତି ।

'ତା ହେଲେ ମୁଁ ଯାଉଛି, ଘରେ ମୋର ଅନେକ କାମ ବାକି ପଡ଼ିଛି । ତମେ ଯାଅ, ସେମାନଙ୍କ ସହ ଆଳାପ ଆଲୋଚନା ସାରି ଆମ ଘରକୁ ଚାଲି ଆସିବ । କଥାବାର୍ତ୍ତା କରିବା । ବହୁତ କଥା ଅଛି । ଆସିବଟି !'

କବିତା ବିଦାୟ ନେଲା ।

ମନ ପଛେଇ ଯାଉଥିଲେ ମଧ୍ୟ ଉମା ଦାଣ୍ଡ ଘରକୁ ଗଲା ।

'ଘରେ ବସି କଣ କରୁଛ ? ଯେଉଁମାନେ ସେନା ବାହିନୀର ତାଲିମ କେନ୍ଦ୍ରମାନଙ୍କରେ ଯୋଗଦେବାକୁ ଚାଲିଯିବେ, ସେମାନଙ୍କ ପାଇଁ ଆମର କଣ କିଛି କରିବାର ନାହିଁ ? ସେମାନଙ୍କୁ ଆଜି ସନ୍ଧ୍ୟାରେ ଏକ ସାଧାରଣ ସଭାରେ ନାଗରିକ ସମ୍ବର୍ଦ୍ଧନା ଜ୍ଞାପନ କରାଯିବ । କଣ କଣ କରାଯିବା ଉଚିତ ଭାବି ଚିନ୍ତା କରିବାକୁ ପଡ଼ିବ । ଏଥିପାଇଁ ଘଣ୍ଟାଏ ପରେ କଂଗ୍ରେସ ଅଫିସରେ ଆଲୋଚନା ହେବ । ତମେ ଶୀଘ୍ର ଆସିବ ।'

ତରବରରେ ଏତିକି କହିଦେଇ ସେମାନେ ଠିଆ ହେଲେ । ଉମାର ଇଚ୍ଛା ହେଉଥିଲା, ସେ ସଙ୍ଗେ ସଙ୍ଗେ ମନା କରିଦେବ ଓ କୁଆଡ଼େ ଯିବନାହିଁ । କିନ୍ତୁ ତା ମୁହଁରୁ କଥା ବାହାରିବା ପୂର୍ବରୁ ସେଠାରୁ ସେମାନେ ଚାଲି ଯାଇଥିଲେ ।

ଉମା ନିରୁପାୟ ହୋଇ ତାଙ୍କର ଯିବା ବାଟକୁ ଚାହିଁ ରହିଲା ।

**ସେ** ଦିନର ସେହି ମଧୁର ସନ୍ଧ୍ୟାରେ ସମ୍ବର୍ଦ୍ଧନା ସଭାକୁ ଯିବା ପୂର୍ବରୁ ଉମା ଗଡ଼ନାୟକଙ୍କ ଘରେ ବସିଥିଲା । କାଲିକି ତାର ଅତିପ୍ରିୟ ସଙ୍ଗିନୀ କବିତା ନାନୀ ଚାଲିଯିବ, ସେଥିପାଇଁ ଆଜି ଘଡ଼ିଏ ମଧ୍ୟ ସେ ତାକୁ ପାଖରୁ ଛାଡ଼ିବାକୁ ଇଚ୍ଛା କରୁ ନଥିଲା । ତାର ମନ ମଧ୍ୟରେ ବାରମ୍ବାର ନାନା ଭାବାନ୍ତର ଜାତ ହେଉଥିଲା ।

'ସମସ୍ତେ ଯଦି ଜାଣୁଥାନ୍ତେ, ଜଗତରେ ପ୍ରତ୍ୟେକ ମଣିଷର, ନିଜ ନିଜର ଭୂମିକା କଣ, ତା ହେଲେ କିଛି କଥା ନଥିଲା । କିନ୍ତୁ କିଛି ନ ଜାଣି କି ଜାଣିବାକୁ ଚେଷ୍ଟା ନ କରି ଯେଉଁମାନେ ଅନ୍ୟକୁ ଖାଲି ନିନ୍ଦା କରିବାଟାକୁ ଆପଣାର ଅନ୍ୟ ଏକ କର୍ତ୍ତବ୍ୟ ମଣନ୍ତି, ସେମାନଙ୍କୁ କେମିତି ରୋକି ହେବ ?'

ଉମା ମୁଣ୍ଡରେ ହାତ ଦେଲା ।

ଗଡ଼ନାୟକ ବାବୁ କବିତା ହାତରୁ ଚା କପ୍‌ଟି ଉଠେଇ ନେଇ ନେଇ କହିଲେ, ମଣିଷ ମାତ୍ରେ ଭୁଲ୍ କରନ୍ତି । ତଥାପି ସେମାନଙ୍କୁ ଭଲ ପାଇବାକୁ ହେବ । ତାଙ୍କୁ କ୍ଷମା ଦେବାକୁ ପଡ଼ିବ । ମହାତ୍ମା ଗାନ୍ଧୀଙ୍କର ଏହା ଗୋଟାଏ ବଡ଼ ସ୍ଲୋଗାନ ଥିଲା ।

ଉମା ଭୁକ ହୋଇ କବିତାର ମୁହଁକୁ ଅନେଇଲା । କବିତା ପାଖରେ ଠିଆ ହୋଇଥିଲା । ଉମା ଅବଲୀଳାକ୍ରମେ କବିତାର ନଖରୁ କେଶ ପର୍ଯ୍ୟନ୍ତ ବାରମ୍ବାର ନିରୀକ୍ଷଣ କରିସାରି କହିଲା, କବିତା ନାନୀ! ମୁଁ କହି ଦେଉଛି ସିନା, ବୁଝିପାରୁ ନାହିଁ କରୁଣାମୟୀ ଜନନୀର ହୃଦୟ ନେଇ ତୁମେ ରଣକ୍ଷେତ୍ରରେ କିପରି ମଣିଷ ହତ୍ୟା କରିବ! ମୋ ନିଜ ପ୍ରତି ମଧ୍ୟ ମୋ ମନରେ ସନ୍ଦେହ ଜାତ ହୁଏ । ସତରେ ତୁମେ କିଣ ଏ ବିଷୟରେ କେବେ କିଛି ଭାବିଛ ?

କବିତା ମୃଦୁ ହସିଲା । 'ମଣିଷ ସନ୍ତାନମାନଙ୍କୁ ରକ୍ଷା କରିବା ପାଇଁ ଯଦି ମଣିଷ ଆକୃତିର ଅମଣିଷମାନଙ୍କୁ ହତ୍ୟା କରିବାକୁ ପଡ଼େ, କଲ୍ୟାଣମୟୀ ଜନନୀ ତାହା ସହଜରେ କରିପାରେ ।' କହୁ କହୁ ସେ ଗୋଡ଼ ଲମ୍ବେଇ ଚଉକିରେ ବସି ପଡ଼ିଲା ।

ସତରେ କବିତା କାଳି ଗୁଳିଯିବ! ଗଡ଼ନାୟକଙ୍କର ମନେ ପଡ଼ିଗଲା । ପ୍ରଚଣ୍ଡ ଅସ୍ଥିରତା ପ୍ରଖର ବାତ୍ୟା ହୋଇ ତାଙ୍କର ସ୍ମୃତି ଭିତରକୁ ଦୋହଲାଇ ଦେଲା ପରି ଲାଗିଲା । ସେ ଚଞ୍ଚଳହୋଇ ଖଟରେ ଗଡ଼ପଡ଼ି କହିଲେ—

'ମୋର ମନେ ପଡ଼ି ଯାଉଛି, ଭାରତର ସ୍ୱାଧୀନତା ଆନ୍ଦୋଳନ କଥା । ବ୍ରିଟିଶ୍ ଶାସକମାନେ ଗୋଟିଏ ପରେ ଗୋଟିଏ କରି ଆମର ଜନ ନାୟକମାନଙ୍କୁ ଚୋର୍ ଡକେଇତଙ୍କ ପରି ଜେଲ୍‌ରେ ଠୁଙ୍କି ଦେଉଥିଲେ । ଘଟନାକ୍ରମେ ତତ୍କାଳୀନ ବନ୍ଦେ ମାତରଂ ଆନ୍ଦୋଳନର ନେତା ଶ୍ରୀ ଅରବିନ୍ଦ ଆଲିପୁର ଜେଲ୍‌ରୁ ଖଲାସ୍ ହୋଇ ଉତ୍ତରପଡ଼ାର ଏକ ସମ୍ବର୍ଦ୍ଧନା ସଭାରେ ଭାଷଣ ଦେଇ କହିଥିଲେ— 'ଭାରତ ବର୍ଷ ଅନ୍ୟ ଦେଶ ପରି ନିଜ ସକାଶେ ଜାଗ୍ରତ ହୋଇ ନାହିଁ ବା ବଳଶାଳୀ ହୋଇନାହିଁ, ଦୁର୍ବଳକୁ ଗୋଡ଼ରେ ଦଳିଦେବା ପାଇଁ ଉଠିନାହିଁ । ତାହା ପାଖରେ ନ୍ୟସ୍ତଥିବା ଶାଶ୍ୱତ ଜ୍ୟୋତିକୁ ଜଗତରେ ବିକୀର୍ଣ୍ଣ କରିବ ବୋଲି ତାହାର ଉତ୍‌ଥାନ ହୋଇଛି । ଭାରତ ଚିର ଦିନ ବଞ୍ଚି ରହିଛି, ବିଶ୍ୱ ମାନବଙ୍କ ସକାଶେ, ନିଜ ସକାଶେ ନୁହେଁ । ଆଉ ଆଜି ତାକୁ ବଡ଼ ହେବାକୁ ହେବ, ତାହା ମଧ୍ୟ ସାରା ବିଶ୍ୱର ମାନବ ସମାଜ ପାଇଁ, ନିଜ ପାଇଁ ନୁହେଁ ।'

ଗଡ଼ନାୟକ କବିତା ଓ ଉମାର ମୁହଁକୁ ଅନେଇ ଅନେଇ ପୁଣି କହିଲେ, ବୁଝିଲ ଉମା! ଭାରତ ଆଜି ଯଦି ଜାଗ୍ରତ ହୋଇଛି, ଜାଗ୍ରତ ହୋଇଛି କେବଳ ତୁମ୍ଭମାନଙ୍କ ଜରିଆରେ; ମାତୃଶକ୍ତିର ମାଧ୍ୟମରେ । ତେଣୁ ସାଧାରଣ ମଣିଷ ସମାଜର ଅତି ତଳ ସ୍ତରରେ ପଡ଼ି ରହିଥିବା ନାରୀର ବିଗ୍ରହ ନେଇ ତମେ ଆଜି

ଭାରତୀୟ ମହିଳାର କର୍ତ୍ତବ୍ୟ ନିର୍ଦ୍ଧାରଣ କରିବା ସଙ୍ଗତ ହେବନାହିଁ । ରଣ କ୍ଷେତ୍ରରେ ତମେ ଯାହାକୁ ହତ୍ୟା କରିବ, ଯାହାକୁ ହତ୍ୟା କରିବା ଦରକାର ମଣିବ, ସେ କଦାପି ଏ ପୃଥିବୀର ପ୍ରକୃତ ମଣିଷ ସମାଜର ବନ୍ଧୁ ହୋଇ ନଥିବ । ଭାରତର ରକ୍ଷା ଦରକାର ହେଉଛି, ପୃଥିବୀର ରକ୍ଷା ପାଇଁ । ତେଣୁ ଚୀନ୍-ଭାରତ ମଧ୍ୟରେ ଏ ଯେଉଁ ଯୁଦ୍ଧ ଚାଲିଛି, ଏ ଯୁଦ୍ଧ ଗୋଟାଏ ଦେଶ ସହିତ ଆଉ ଗୋଟାଏ ଦେଶର ଯୁଦ୍ଧ ନୁହେଁ; ଏ ଯୁଦ୍ଧ ହେଉଛି, ବର୍ବରତାର ସହିତ ମାନବିକତାର ଯୁଦ୍ଧ । ଅନ୍ୟାୟ ସହିତ ନ୍ୟାୟର ଯୁଦ୍ଧ, ମିଥ୍ୟା ସହିତ ସତ୍ୟର ସଂଗ୍ରାମ । ସେଥିପାଇଁ ଏ ସଂଗ୍ରାମରେ ନାରୀ ଜନନୀ ଭାବରେ ଯୁଦ୍ଧ କରିବ ନାହିଁ, ସେ ଯୁଦ୍ଧ କରିବ ରଣ ଚଣ୍ଡୀଙ୍କ ବିକଟାଳ ସମଧର୍ମିଣୀ ଭାବରେ ।

ଉମା ଓ କବିତାର ମୁହଁରେ ଏକ ଅପୂର୍ବ ପ୍ରସନ୍ନତା ଉକୁଟି ଉଠିଲା । ଉମା କହିଲା, ଉଠନ୍ତୁ ଏଥର । ଲୁଗା ବଦଳାନ୍ତୁ । ସମୟ ହୋଇ ଗଲାଣି । ଗାଡ଼ି ଚାଲି ଆସିବ ।

କବିତା ଘର ଭିତରକୁ ଗଲା । ପଟ୍ଟନାୟକ ବାବୁ ଗାଧୁଆ ଘରେ ପଶିଲେ । ଉମା ଅସହାୟ ଭାବରେ ବାରଣ୍ଡାରେ ଟହଲ ମାରୁ ମାରୁ ଭାବିବାକୁ ଲାଗିଲା, ଏହାପରେ ସେ କଣ କରିବ ?

ଉମାର ଭାବନା ଗୋଳମାଳ ହୋଇଗଲା ।

ଜିଲ୍ଲାଜନନୀ ପଡ଼ିଆରେ ବିରାଟ ସମ୍ବର୍ଦ୍ଧନା ସଭା । କବିତା, ହେମ ପ୍ରଭୃତି ତରୁଣୀମାନେ ଓ ବହୁ ବୀର ଯୁବ ନାନା ଭାରତୀୟ ସେନା ବାହିନୀର ବିଭିନ୍ନ ତାଲିମ କେନ୍ଦ୍ରରେ ଯୋଗଦେବା ପାଇଁ ଆଜ ରାତିରେ ଓ କାଲି ଭୋରରୁ ଯାତ୍ରା କରିବେ । ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଏହି ବିପୁଳ ଆୟୋଜନ !

ପୁଷ୍ପ ବୃଷ୍ଟି, ମାଲ୍ୟାର୍ପଣ, ଘନ ଘନ କରତାଳି ଓ ବାଃ ବାଃ ଧ୍ୱନି ଭିତରେ ସଭାସ୍ଥଳ ସରଗରମ ହୋଇ ଉଠିଲା ।

ଉମା ତାର ଲକ୍ଷ ଓ ଲକ୍ଷ ଜର୍ଜର ରୋମାଞ୍ଚକାରୀ ସଂକ୍ଷିପ୍ତ ଭାଷଣରେ ତାର ସମଧର୍ମୀ ଓ ସହକର୍ମିଣୀମାନଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇ ସାରିଲେ ପରେ

ସଭାମଞ୍ଚ ଉପରକୁ ଉଠି ଆସିଲେ କବିତାର ସ୍ୱାମୀ ଅଧ୍ୟାପକ ଗଡ଼ନାୟକ । ଅବିଚ୍ଛିନ୍ନ କରତାଳି ଶବ୍ଦରେ ସମୁଦ୍ର ଲହଡ଼ା ମାଡ଼ି ଆସିଲା ପରି ଲାଗିଲା ।

ଅନ୍ୟାୟର ପ୍ରବଳ ଆକ୍ରମଣ କବଳରୁ ନ୍ୟାୟ ଓ ଧର୍ମର ଅସ୍ତିତ୍ୱକୁ ମାନବିକତା ସହିତ ରକ୍ଷା କରିବା ଉଦ୍ଦେଶ୍ୟରେ ପତ୍ନୀର ଯୁଦ୍ଧଯାତ୍ରା ଉପଲକ୍ଷେ ସ୍ୱାମୀ ଆଜି ମଙ୍ଗଳ ମନାସିବେ, ଏ ଏକ ନୂଆ କଥା ! ସମସ୍ତେ ଆଁ କରି କାନେଇ ନାକେଇ ଅନେଇ ରହିଲେ । ଜୟପୁରର ଯୁବକ ଓକିଲ ପରମାନନ୍ଦ ରାଉତରାୟ ସଭାର ସବା ପଛରେ ଠିଆ ହୋଇଥିଲା । ଗଡ଼ନାୟକଙ୍କୁ ସଭାମଞ୍ଚ ଉପରେ ଦେଖିବା କ୍ଷଣି ତାର ସାଙ୍ଗ ଦି ଜଣଙ୍କୁ ହଲେଇ ଦେଇ କହିଲା, ବାଃ ବାଃରେ ନିର୍ଲଜ ଲମ୍ପଟ ! ପୁଅ ବାହାରିଛି, ସ୍ତ୍ରୀକୁ ଯୁଦ୍ଧକୁ ପଠେଇ ରଜା ଝିଅମାନଙ୍କ ସହିତ ମଉଜ କରିବ ! ପାଖରେ ଆଉ ଯେଉଁମାନେ ଠିଆ ହୋଇଥିଲେ, ତା କଥା ଯେଉଁମାନଙ୍କ କାନରେ ପଡ଼ିଲା, ସେମାନେ ହଠାତ୍ ବିବ୍ରତ ହୋଇ ପଡ଼ିଲେ । ଅବଶ୍ୟ ଆଉ କିଛି ପଚାରି ପାରିଲେ ନାହିଁ କିନ୍ତୁ ଅଳ୍ପ ସମୟ ଯାଏ ପରମାନନ୍ଦର ମୁହଁକୁ ଅନେଇ ରହିଲେ । ସମସ୍ତଙ୍କ ମନରେ ବିଷ ଚରିଗଲା । ହୃଦୟ ଆନ୍ଦୋଳିତ ହୋଇ ଉଠିଲା ।

ଗଡ଼ନାୟକ ଟେବୁଲର ଦୁଇ ମଙ୍ଗକୁ ମୁଠେଇ ଧରି, କଣ୍ଠ ଥରେଇ କହିଲେ, ଆଜି ସନ୍ତାନମାନଙ୍କ ଜୟ ଯାତ୍ରାରେ ମଙ୍ଗଳ ମନାସିବା ପୂର୍ବରୁ ଗୋଟିଏ କଥା ମୋର ମନକୁ ଆସୁଛି, ଓଡ଼ିଶାରୁ ସର୍ବପ୍ରଥମ ଥର ପାଇଁ ତରୁଣୀମାନେ ଆଜି ସମର ଶିକ୍ଷା ପାଇଁ ଯାଉଛନ୍ତି । ଯେଉଁ ଗୃହିଣୀମାନେ, ବୋହୂ ଭୁଆସୁଣୀମାନେ, ଝିଅମାନେ ଆଜି ରଣକ୍ଷେତ୍ର ଉଦ୍ଦେଶ୍ୟରେ ଯାତ୍ରା କରୁଛନ୍ତି, ସେମାନେ ଏବେ ସମଗ୍ର ଦେଶବାସୀଙ୍କର ନମସ୍ୟା ! କବିତା, ତୁମେ ମଧ୍ୟ ଆଜିଠାରୁ ମୋର କେବଳ ପତ୍ନୀ ନୁହଁ, ମା ! ମହା ମହା ଅବତାର ପୁରୁଷମାନଙ୍କର ଲୀଳାଭୂମି ଏ ଭାରତ, କୋଟି କୋଟି ଦେବୋପମ ମାନବ ହୃଦ-ପଦ୍ମର ସବୁଜ ବନାନୀ ଏ ପବିତ୍ର ଭୂମି ଭାରତବର୍ଷ, ତାର ପ୍ରନ୍ତରକ୍ଷା ପାଇଁ ତମେ ନାରୀ, ତମେ ଜନନୀ, ତମେ ମହାମାୟୀ ମହାମାୟୀ ମହାକାଳୀ ମହାଲକ୍ଷ୍ମୀ ମହାସରସ୍ୱତୀ ମହାଶକ୍ତି ଆଜି ଅସ୍ତ୍ରଧାରଣ କରିବାକୁ ଯାଉଛ, ତୁମ୍ଭମାନଙ୍କର ଜୟଯାତ୍ରା ଲାଗି ମୁଁ ମୋ ପ୍ରାଣ-ବିହ୍ୱଳିତ ଶୁଭେଚ୍ଛା ଜଣାଉଛି । ମୁଁ ହତଭାଗ୍ୟ, ଅକ୍ଷମ, ଭାରତ ମାତାର ଗୋଟିଏ ଅଯୋଗ୍ୟ ସନ୍ତାନ । ଦୁଃଖ ରହିଗଲା, ମୁଁ ଆଜି ସନ୍ତାନମାନଙ୍କର, ବୀରାଙ୍ଗନାମାନଙ୍କର ବନ୍ଦନୀୟ ଯାତ୍ରା ପଥରେ ସହଯାତ୍ରୀ ହୋଇ ପାରିଲି ନାହିଁ ।

ଜାଣେନାହିଁ, ମାୟାମୋହ ବିଜଡ଼ିତ ସଂସାର ପଥରେ ମୋହିତ ଏ ଜୀବନକୁ ଆଉ କପରି ଭାବରେ ମାତୃଭୂମିର ପୁଣ୍ୟ ସେବାରେ ସଂପୂର୍ଣ୍ଣ ବିନିଯୋଗ କରିବି ! ଭାରତର ବଳିଷ୍ଠ ମାନବିକତାକୁ ଚିର ଜାଗ୍ରତ କରି ରଖିବା ପାଇଁ ଏଠି ଥାଇ ମୁଁ କଣ କରି ପାରିବି ! ମାନବ ଜାତିର ସମୂହ ଅଗ୍ରଗତି ସାଧନରୁ ମଣିଷକୁ ବଞ୍ଚିତ କରାଏ, ବିଚ୍ୟୁତ କରାଏ ମଣିଷର ଯେଉଁ ଧୂଳି, କାଦୁଅର ଦେହପ୍ରତି ମିଥ୍ୟା ମମତା, ଅହେତୁକ ଆକର୍ଷଣ, ତାକୁ କି ଭାବରେ ଭାଙ୍ଗିଦେବି, ଆଜି ଏହାହିଁ ମୋ ଜୀବନର ଏକ ବଡ଼ ପ୍ରଶ୍ନ !

ତୁମ୍ଭେମାନେ ଯାଅ, ନିଖିଳ ଆତ୍ମାର ଅନନ୍ତ ସ୍ରୋତ ତୁମର ପଛରେ ଧାଇଁଥିବ, ଅହର୍ନିଶି ତୁମ୍ଭମାନଙ୍କୁ ବଳ ଦେଉଥିବ, ଉତ୍ସାହ ଦେଉଥିବ, ଭରସା ହୋଇ ରହିଥିବ । ପୃଥିବୀର ସକଳ ଶକ୍ତି ତୁମ୍ଭ ପକ୍ଷରେ ରହିଅଛି ।

ତୁମେ ଯାଅ କବିତା, ଧର୍ମକ୍ଷେତ୍ର ରଣକ୍ଷେତ୍ରରେ ଯଦି ବା ତମର ନଶ୍ୱର ଶରୀର ନିଶ୍ଚିହ୍ନ ହୋଇଯିବ, ତଥାପି ମୁଁ ସନ୍ତୁଷ୍ଟ ହେବି । କାରଣ ତା ଦ୍ୱାରା ତମର ଆତ୍ମା ତୁରନ୍ତ ଅନ୍ୟ ଏକ ଅଧିକ ସକ୍ଷମ ଦେହ ଧାରଣ କରି ଜନ୍ମଲାଭ କରିବ । ବିଜୟ ଆହୁରି ସହଜ ହୋଇଯିବ ।

ତୁମେ......'

ଗଡ଼ନାୟକଙ୍କର କଣ୍ଠ ରୁଦ୍ଧ ହୋଇଗଲା । ସେ ରୁମାଲରେ ବାରମ୍ବାର ଆଖି ପୋଛି ପୋଛି ନିଜ ଆସନରେ ବସି ପଡ଼ିଲେ ।

ଧନସାଇ ବାରିକ ଆଠ ଦିନ ହେଲା ସିଆଡ଼ି ପତ୍ର କଣ୍ଟ୍ରାକ୍ଟର ରାଇପୁରିଆ ସେଠ୍ ସାଙ୍ଗରେ ଜାମକନାଡ଼ି ଗାଁକୁ ଚାଲି ଯାଇଛି । ସେ ସେହି ଅଞ୍ଚଳର ପତ୍ର ସଂଗ୍ରହ କାମ ସାରି କେବେ ଫେରିବ ଠିକଣା ନାହିଁ ।

ସେ ଦିନ ରାତିରେ ସଭାରୁ ଫେରିଆସି ମଞ୍ଜୁମାଳା ଘରେ ଏକୁଟିଆ ଶୋଇ ଶୋଇ ଭାବିଲା, ଏମାନଙ୍କର ସଙ୍ଗରେ ସାଙ୍ଗହେଲେ ଆଉ ରକ୍ଷାନାହିଁ । ଜୀବନଟା ପୋକ ମାଛିଙ୍କ ଜୀବନ ପରି ଗୋଟାଏ ଫୁ ରେ ବୃଥାରେ ଉଡ଼ିଯିବ ।

ସେ ଡିନିଆର ଦିନ ସ୍କୁଲ ଇନ୍‌ସପେକ୍ଟର ୰ଦାନବନ୍ଧୁ ପଟ୍ଟନାୟକଙ୍କ ବଡ଼ ଝିଅ ଗ୍ରାମସେବିକା ବିଜୟଲକ୍ଷ୍ମୀ ସାଙ୍ଗରେ ମଫସଲ ଗସ୍ତରେ ଚାଲିଗଲା । ଜୟପୁର ଠାରୁ ଆଠ ମାଇଲ ବାଟ ବଣେ ବଣେ ଚାଲି ଚାଲି ସେମାନେ ପଣସପୁଟରେ ପହଞ୍ଚିଲେ ଦିନ ବାରଟା ବେଳେ । ବିଜୟଲକ୍ଷ୍ମୀ ପ୍ରସ୍ତାବ କରିଥିଲା, ଆଜି ଦିନଟା ବାଗ୍ରା ଗାଁରେ ରହିଯିବା । ବାଗ୍ରା ଜଳ-ପ୍ରପାତ ଦେଖିବା । ସନ୍ଧ୍ୟାରେ ପଣସପୁଟ ଯିବା । କିନ୍ତୁ ମଞ୍ଜୁମାଳା ଗୁଁ ପୁଁ ହୋଇ କହିଲା, ଭଲ ହେବନାହିଁ । ଯଦି କୌଣସି ଅଫିସର ତାଙ୍କ ପିଲା ପିଲିଙ୍କୁ ବାଗ୍ରା ଜଳ-ପ୍ରପାତ ଦେଖାଇବାକୁ ଆଣିଥିବେ, ସର୍ବନାଶ! ସଙ୍ଗେ ସଙ୍ଗେ ସହରକୁ ଖବର ଚାଲିଯିବ ।

ପଣସପୁଟର ମହିଳା ସମିତି ଘରେ ସେମାନେ ଡେରା ପକାଇଲେ ।

ମଫସଲର ମହିଳା ସମିତିଗୁଡ଼ିକ ଜରିଆରେ ଜାତୀୟ ପ୍ରତିରକ୍ଷା ପାଣ୍ଠିକୁ ସୁନା ସଂଗ୍ରହ କାର୍ଯ୍ୟରେ ସହଯୋଗ କରିବା ଲାଗି ଗ୍ରାମସେବିକା ବିଜୟଲକ୍ଷ୍ମୀ ବ୍ଲକ୍ ତରଫରୁ ନିର୍ଦ୍ଦେଶ ପାଇଛି । ଏ ଗାଁକୁ ଆସିବା ତାର କର୍ତ୍ତବ୍ୟ । ମଞ୍ଜୁମାଳା ମଧ୍ୟ ଜଣେ ସମାଜ ସେବିକା ନାମରେ ପରିଚିତା । ତେଣୁ ତାକୁ ସାଙ୍ଗରେ ଆଣି ଥିବାରୁ ବିଜୟଲକ୍ଷ୍ମୀକୁ ବିଶେଷ କିଛି ଅଡୁଆ ବୋଧ ହେଲାନାହିଁ ! ବରଂ ସୁଖାଳାପ ଭିତରେ ବାଟ ସରିଯାଇ ଥିବାରୁ ତାକୁ ବେଶ୍ ଆନନ୍ଦ ଲାଗିଲା ।

କୋରାପୁଟ ଜିଲ୍ଲାର ଆଦିବାସୀ ଗାଁମାନଙ୍କରେ ମଧ୍ୟ ଆଜିକାଲି ଗ୍ରାମସେବିକାମାନଙ୍କର କାର୍ଯ୍ୟକଳାପ ସମ୍ପର୍କରେ ଲୋକଙ୍କ ମନରେ ପ୍ରାଥମିକ ଧାରଣା ଆସି ଗଲାଣି । ଅବଶ୍ୟ ଅଧିକାଂଶ ଆଦିବାସୀ ସ୍ତ୍ରୀ ଲୋକ ଏ ପର୍ଯ୍ୟନ୍ତ ଏମାନଙ୍କର ନାଟକୀୟ ଆବିର୍ଭାବ ଓ ପ୍ରସ୍ଥାନ ସମ୍ପର୍କରେ ବିଶେଷ କିଛି ବୁଝିପାରୁ ନାହାନ୍ତି । ତଥାପି ଧିରେ ଧିରେ ଗ୍ରାମସେବିକା, ଧାତ୍ରି ପ୍ରଭୃତି କେତେ କର୍ମଚାରିଣୀମାନଙ୍କ ପ୍ରତି ତାଙ୍କ ଭିତରେ ଏକ ପ୍ରକାର ମମତା ସୃଷ୍ଟି ହୋଇ ଆସୁଛି ।

ଆଠ ଦିନ ତଳେ ଏ ଅଞ୍ଚଳକୁ ଆଦିବାସୀ ମନ୍ତ୍ରୀ ଆସିଥିଲେ । ସେ ଦଳବଳ ସାଙ୍ଗରେ ଉଚ୍ଚ ପାହାଡ଼ ଉପରକୁ ଦୁର୍ଗମ ପଥରେ ପାଦରେ ଚାଲି ଚାଲି ଉଠିଥିଲେ । ପାହାଡ଼ ଉପର ଆଦିବାସୀ ଗାଁକୁ ଯାଇ ଗାଁ ଲୋକଙ୍କ ସହିତ କଥାବାର୍ତ୍ତା କରିଥିଲେ । ସହି ନ ପାରିବା ଲୋକେ କହନ୍ତି, କମ୍ୟୁନିଷ୍ଟ ନେତା ପାହାଡ଼ ଉପରକୁ ଯାଇ ପାହାଡ଼ିଆ ଲୋକଙ୍କୁ ମତେଇ, ବଣ ପୋଡ଼େଇ ପୋଡୁଚାଷ କରେଇ

ପ୍ରତିଷ୍ଠା ଅର୍ଜନ କରୁଥିବାରୁ, ବାଦରେ ଏ କଂଗ୍ରେସ ମନ୍ତ୍ରୀ ଧେଁ ସେଁ ହୋଇ ପାହାଡ଼ ଚଢ଼ୁଛନ୍ତି । ମନ୍ତ୍ରୀଙ୍କ ଗସ୍ତ ଖର୍ଚ୍ଚ, ତାଙ୍କ ଦଳରେ ଯାଇଥିବା ମୋଟା ଦରମାବାଲା ସରକାରୀ କର୍ମଚାରୀମାନଙ୍କ ଗସ୍ତ ଖର୍ଚ୍ଚ ସାଙ୍ଗରେ ଭୋଜିଭାତ ଧୁମ୍‌ଧାମ୍ ଖର୍ଚ୍ଚ ମିଶେଇ ଦେଲେ ମୋଟ ଖର୍ଚ୍ଚ ଯାହା ହୋଇଥିବ, ସେତକ ଟଙ୍କା ସେ ଗାଁ ଲୋକଙ୍କୁ ଦେଇ ପକେଇ ଥିଲେ ସେମାନେ ବର୍ଷ ବର୍ଷ ଧରି ଚଳିବା ପାଇଁ ଧାନ ମାଣ୍ଡିଆ କିଣି ସୁଖରେ ବଞ୍ଚିଥାନ୍ତେ ।

ଏ କଥା ସତ ହେଉ କି ମିଛ ହେଉ ମନ୍ତ୍ରୀଙ୍କ ଗସ୍ତ ଫଳରେ ଦେଶର ଯଥେଷ୍ଟ ଲାଭ ହୋଇଛି । ଏ ଅଞ୍ଚଳ ସହିତ ସଂପୃକ୍ତ ସରକାରୀ କର୍ମଚାରୀମାନେ ଜାଗ୍ରତ ହୋଇ ଉଠିଛନ୍ତି । ଲୋକଙ୍କୁ ସଚେତ କରାଇବା ପାଇଁ ବହୁ ଭାବରେ ଉଦ୍ୟମ କରୁଛନ୍ତି । ଫଳରେ ସୀମାନ୍ତ ବିପତ୍ତି ସମ୍ପର୍କରେ ମଧ୍ୟ ଏମାନଙ୍କର ମନରେ ଧାରଣା ସୃଷ୍ଟି ହୋଇ ସାରିଛି । ଏଥିପାଇଁ ବିଜୟଲକ୍ଷ୍ମୀ ଏ ଅଞ୍ଚଳରେ କାମ କରିବାକୁ ବେଶ୍ ଆଗ୍ରହୀ । କାରଣ ପ୍ରତିରକ୍ଷା ପାଇଁ ଦାନ ସଂଗ୍ରହ କରିବାକୁ ଲୋକଙ୍କୁ ବେଶି ବୁଝାଇବା ଦରକାର ହେଉନାହିଁ ।

ମହିଳା ସମିତି ଘରେ ତାଙ୍କପାଇଁ ରନ୍ଧାବଢ଼ା ହେବା କଥା । କିନ୍ତୁ ପଣସପୁଟର ସରପଞ୍ଚ ଚେମ୍‌ଟା ମୁଦୁଲି ଭାରି ଭଲ ଲୋକ । ସେ ଏମାନଙ୍କ ପାଇଁ ନିଜ ମେଲାଘରେ ରୋଷେଇବାସର ବ୍ୟବସ୍ଥା କରିଦେଲା । ସେବାଶ୍ରମ ସ୍କୁଲ ସହକାରୀ ଶିକ୍ଷକ ମଧୁସୂଦନ ମହାନ୍ତି ନିଜ ହାତରେ ରନ୍ଧାବଢ଼ା କଲେ । ମୁଦୁଲି ଯାହା କହିବେ, ମନ ନ ପାଇଲେ ବି ମାଷ୍ଟ୍ରେ କରନ୍ତି । କାରଣ ମୁଦୁଲିଙ୍କ ଦୟାରୁ ମାଷ୍ଟ୍ରେ ଏ ଗାଁକୁ ଆସିଲା ଦିନୁ ଆଶାତୀତ ଭାବରେ ଦି ପଇସା ସଞ୍ଚୟ କରି ପାରୁଛନ୍ତି । ଚାରି ବଡ଼ ସାନ ଲୋକଙ୍କ ସହିତ ପରିଚୟ ହେଉଛି । ଆଜକାଲି ଉଚ୍ଚ କର୍ତ୍ତୃପକ୍ଷମାନେ ମଧ୍ୟ ତାଙ୍କ କଥାକୁ କାନ ଦେଉଛନ୍ତି । ଭଲ ମନ୍ଦରେ କଖାରୁଟିଏ, କାକୁଡ଼ିଟିଏ କି ମାଛଗଣ୍ଡେ ପଠେଇ ଦେଲେ ରଖୁଛନ୍ତି । ତା ଛଡ଼ା ଗ୍ରାମସେବିକା ପ୍ରତି ମାଷ୍ଟ୍ରମାନଙ୍କର ଗୋଟାଏ ସ୍ୱତନ୍ତ୍ର ଖାତିର ରହିଛି । ବିଶେଷ କରି ବିଜୟଲକ୍ଷ୍ମୀର କଥା ସମସ୍ତେ ଜାଣନ୍ତି । ସେ ଇଚ୍ଛାକଲେ ଯେ କୌଣସି ମାଷ୍ଟ୍ର ମାଷ୍ଟ୍ରାଣୀ, ଗ୍ରାମସେବକମାନଙ୍କୁ ମନଇଚ୍ଛା ଯେଉଁଠିକି ପାରୁ ସେଇଠିକି ବଦଳି କରାଇ ଦେଇ ପାରିବ । ଆଜକାଲି ସବୁ ବିଭାଗୀୟ କର୍ତ୍ତାମାନଙ୍କ ଠାରେ ତାରି କଥା ଚଳୁଛି । ତା ପ୍ରତି ଅନେକଙ୍କର ଗୋଟାଏ କେମିତି ମହୁକିଆ ଖାତିର ମଧ୍ୟ ରହିଛି ।

ଖାଇସାରି ମଞ୍ଜୁମାଳା କହିଲା, ଯାହାହେଉ ଲକ୍ଷ୍ମୀ, ତମେ ଗୋଟାଏ ବଢ଼ିଆ ଶୃଙ୍ଖଳା ପାଇଛ ।

'କେମିତି ?'

'ପୁରୁଷ ପରଶଣା ପାଟିରେ ବାଜୁଛି ।'

'ସହରିଆଙ୍କ ପାଇଁ ଏ କଥା ନୂଆ ହୋଇପାରେ ମଞ୍ଜୁ । କିନ୍ତୁ ଯୁଗ ଯୁଗ ଧରି ଆଦିବାସୀ ଗାଁମାନଙ୍କରେ ଏ ପ୍ରଥା ଚାଲିଛି । ସ୍ତ୍ରୀ କାମକୁ ଗଲେ ପୁରୁଷ ପେଜ ରାନ୍ଧିବ, ବାଢ଼ିବ, ପିଲା ଖେଳେଇବ ।'

ଦିନ ଦୁଇଟା ବେଳକୁ ମହିଳା ସମିତିର ସଭା ଅନୁଷ୍ଠିତ ହେଲା । ଲକ୍ଷ୍ମୀ ଓ ମଞ୍ଜୁମାଳା ଉଦ୍‌ବୋଧନ ଦେଇ ଆଲୋଚନା ଆରମ୍ଭ କଲେ । ଲକ୍ଷ୍ମୀ ଗୋଟାଏ କଥା ଉପରେ ବେଶି ଜୋର୍‌ଦେଲା ଯେ, ନୂଆରେ ଗଢ଼ା ହୋଇଥିବା ବାଗ୍ରା ଗାଁ ମହିଳା ସମିତିର ସଭ୍ୟାମାନେ ପ୍ରତିରକ୍ଷା ପାଣ୍ଠିକୁ କୋଡ଼ିଏ ତୋଳା ସୁନା, ଅଢ଼େଇ ଶହ ଟଙ୍କା ସଂଗ୍ରହ କରି ଦେଇ ସାରିଲେଣି । ଏହି ପଣସପୁଟ ମହିଳା ସମିତି କେତେ ପୁରୁଣା ସମିତି । ତେଣୁ ଏ ସମିତି ତାଙ୍କ ଠାରୁ ଢେର ବେଶି ସୁନା, ଟଙ୍କା ଦେବାର କଥା ।

ବଣ୍ଡକା ପରଜାର ପଞ୍ଚମ ସ୍ତ୍ରୀ ମିଲ୍‌କି ଉପରକୁ ଅନେଇ ଅନେଇ କହିଲା, 'ଆମେ ମିଶା ଦେବୁ । ଆମର୍ ଦେଶେ ଯୁଦ୍ଧ ଲାଗିଚି ବୋଇଲେ ଆମେ ଦେବୁ ନାଇଁ ତ କେ ଦେବ !' ସେ ତାର ଉପର କାନରେ ପିନ୍ଧିଥିବା ଅଣେ ଓଜନର ଫାଁସିଆଟି ବାହାର କରି ସମିତି ସଭାପତିଙ୍କ କୋଳ ଉପରେ ପକେଇ ଦେଲା । ତା ପଛକୁ ତା ପଛକୁ ଜଣେ ପରେ ଜଣେ ହୋଇ ସେଠି ଯେତେ ମାଇକିନା ଥିଲେ, ସମସ୍ତେ ଯାହାର ଯାହାଥିଲା ନାକରୁ କାନରୁ କାଢ଼ି ଅଜାଡ଼ି ଦେଲେ ।

ଲକ୍ଷ୍ମୀ ବଡ଼ ଅଡୁଆରେ ପଡ଼ିଲା । ମହିଳା ସମିତି ସଭାପତିଙ୍କୁ ରସିଦ ଲେଖିବା ଆସେନାହିଁ । ସୁନା ଓଜନ କରିବା ପାଇଁ ନିକିତି ମଧ୍ୟ ନାହିଁ ! କେମିତି ହିସାବ ରଖାଯିବ—ଲକ୍ଷ୍ମୀ ଆକାଶକୁ ଅନେଇଲା । ମଞ୍ଜୁମାଳା କହିଲା, ଗୋଟାଏ ତାଲିକା କରିଦିଅ । ଜୟପୁର ନେଇ ଓଜନ କରାଇ ଆମେ ରସିଦ ଲେଖାଇ ପଠାଇ ଦେବା ।

କେହି ଆପତ୍ତି କଲେ ନାହିଁ । ରସିଦ ପାଇବା ପାଇଁ ମଧ୍ୟ କାହାରି ମନରେ ଟିକିଏ ହେଲେ ଆଗ୍ରହ ନଥିଲା ।

ସନ୍ଧ୍ୟା ପୂର୍ବରୁ ସହକାରୀ ସ୍କୁଲ ଇନ୍‌ସପେକ୍ଟର ଗଗନ ବାବୁ ଗସ୍ତରେ ଆସି ସେହି ଗାଁ ସ୍କୁଲ ଘରେ ରହିଥିଲେ । ଗ୍ରାମପଞ୍ଚାୟତ ସେକ୍ରେଟେରୀ ମଞ୍ଜୁମାଳା ଓ ଲକ୍ଷ୍ମୀଙ୍କୁ ତାଙ୍କ ସହିତ ପରିଚୟ କରେଇ ଦେଲେ ଗ୍ରେନ୍‌ଗୋଲା ପାଖରେ । ଗ୍ରାମପଞ୍ଚାୟତ ଅଫିସ ଘରେ ବସି ଟିକି ପିଇ ପିଇ ଗପ ଜମିଲା । ମଞ୍ଜୁମାଳାକୁ ଚାହିଁ ଗଗନ ବାବୁ ପଚାରିଲେ, ସହର ଛାଡ଼ି ଆପଣ କେମିତି ଏଆଡ଼େ ଚାଲି ଆସିଲେ ?

ମଞ୍ଜୁମାଳା ପ୍ରଥମେ ବିଚଳିତ ହୋଇ ପଡ଼ିଲା । ସଙ୍ଗେ ସଙ୍ଗେ ପୁଣି ମୁହଁରେ ସ୍ୱାଭାବିକ ମୃଦୁହାସର ଲହରୀ ଛୁଟାଇ କହିଲା, ସେଠି ଆଉ କାମ କରିବାକୁ ଭଲ ଲାଗିଲା ନାହିଁ ।

'କାହିଁକି ?'

'ସେଠି କାମ କଲା ଲୋକଙ୍କୁ କେହି ପଚାରନ୍ତି ନାହିଁ । ଯାର ମୁହଁ ଟାଣ, ଯାହାର ଦେହ ମୁହଁ ବଡ଼ ଲୋକଙ୍କ ମନ ଟାଣେ, ତାକୁ ବଡ଼ ବୋଲି ଠେକାଠେକି କରାଯାଏ । ସେଠାରେ ଆପଣମାନଙ୍କ ଭଳି, ଆମ୍ଭମାନଙ୍କ ଭଳି ଲୋକଙ୍କର ସ୍ଥାନ ନାହିଁ ।'

ଗଗନ ବାବୁ ବିସ୍ମିତ ହୋଇ କହିଲେ 'ମୁଁ କିଛି ବୁଝି ପାରିଲି ନାହିଁ ।'

'ଆପଣ କେମିତି ବୁଝିବେ ? ଯେଉଁ ଦିନ ଗଡ଼ନାୟକ ଓ ଉମା କଥା ପଦାରେ ପଡ଼ିବ, ସହରରେ ବିଶୃଙ୍ଖଳା ସୃଷ୍ଟି ହେବ, ସେଇ ଦିନ ଆପଣମାନେ ସବୁ କଥା ବୁଝି ପାରିବେ ।'

'ସତେ ?'

'କାହିଁକି ମୁଁ ମିଛ କହିବି ?'

ଏପରି ଗରମା ଗରମି ଆଳାପ ଆଲୋଚନା ଉପଭୋଗ କରିବାକୁ ସମସ୍ତେ ଉତ୍ସାହିତ ହେଲେ । ଅନେକ ରାତିଯାଏ ଗପ ଚାଲିଲା ।

ସେହି ଘରର ପଛପଟେ ମସଲା ବଟା ହେଉଥିଲା । ମନ ମଧ୍ୟରେ ସହସ୍ର ଘୃଣାର ତରଙ୍ଗ ଉଠୁଥିଲେ ମଧ୍ୟ ମାଷ୍ଟ୍ରବାପୁଡ଼ା ସରପଞ୍ଚଙ୍କ 'ଗୋଡି'ସହ କୁକୁଡ଼ାର ପେଟ ଚିରି ଅନ୍ତ ବୁଜୁଲା ଓଲାରିବାକୁ ବାଧ୍ୟ ହୋଇଥିଲା ।

ଦିନଟା ଚାଲି ଯାଇଛି । ଉମା ଆସୁ ନାହିଁ । ଆଗପରି ଆଉ ଆଉମାନେ ବି ସେତେ ଆସୁ ନାହାନ୍ତି । ଗଡ଼ନାୟକଙ୍କ ମନ ଇତସ୍ତତଃ ହୋଇ ପଡ଼ୁଛି ।

କେତେବେଳେ କେମିତି ଅଧ୍ୟାପକ ବନ୍ଧୁମାନେ ଆସନ୍ତି । ସୁଖାଳାପ ମଧ୍ୟରେ ମନଗଢ଼ା ଅଭିଯୋଗ ଭିତରେ ମନକୁ କାଟିଲା ଭଳି ମତାମତ ଦେଇ ଯାଆନ୍ତି । ଗଡ଼ନାୟକଙ୍କ ମନ ଛଟପଟ ହୁଏ । ବେଳେ ବେଳେ ଛାତ୍ରମାନେ ଆସିଲେ ଭଲ ମନ୍ଦ ପଚାରନ୍ତି, କିନ୍ତୁ ଅଧ୍ୟାପକ ମନଖୋଲି ସବୁ କଥା କହି ପାରନ୍ତି ନାହିଁ । ପ୍ରତି ମୁହୂର୍ତ୍ତର ଚିନ୍ତା ପେଟ ଭିତରେ, ମନ ଭିତରେ ଜମାଟ ବାନ୍ଧେ । ଛଟପଟ ଲାଗେ ।

କାହା ପାଖରେ ବସି ମନ କଥା ସବୁ କହି ଦେବାକୁ ଇଚ୍ଛା ପ୍ରବଳ ହୁଏ । କିନ୍ତୁ କାହାକୁ କହିବେ ? ବଣା ବଣା ଲାଗେ । କାହା ପାଖକୁ ଯିବ ଯିବ ହୁଅନ୍ତି । ନିକଟର, ଦୂରର ଅନେକ ମୁହଁ ନଜରକୁ ଆସେ । ପୁଣି ଛାଇଭଳି ଉଭେଇ ଯାଏ ସେହି ମୁହୂର୍ତ୍ତରେ । ସମସ୍ତଙ୍କ ଚେହେରା ଅସ୍ପଷ୍ଟ, ଜାଲି ଜାଲିଆ ଦିଶେ ।

ଉମାର କଳଙ୍କଶୂନ୍ୟ ଉଜ୍ଜ୍ୱଳ ମୁହଁଟି ଜୀବନ୍ତ ହୋଇ ଆଖି ଆଗରେ ଝଲସି ଉଠେ । ଇଚ୍ଛାହୁଏ, ଏଇକ୍ଷଣି ସେ ଉମା ଘରକୁ ଯିବେ । କିନ୍ତୁ ଗତ କେତେ ଦିନ ହେବ ଉମାର ବୋଉ ଓ ବିଦ୍ୟାଧର ବାବୁଙ୍କ ଠାରୁ ସେ ଯେମିତି ବ୍ୟବହାର ପାଇଛନ୍ତି, ଭଲ ଲାଗିନାହିଁ । ତାଙ୍କ ଘରକୁ ଯିବାଲାଗି ଉତ୍ସାହ ଆସୁନାହିଁ ।

ସବୁଦିନ ପରି ନଅଟା ବେଳକୁ ଗାଧୁଆ ପାଧୁଆ ସାରି ସେ ଧ୍ୟାନରେ ବସିଲେ । ଚାକର ଜଳଖିଆ ଆଣିବାକୁ ହୋଟେଲକୁ ଗଲା ।

'ଭଗବାନ! ତମେଇ ମୋର ଏ ନିଃସଙ୍ଗ ଜୀବନର ପଥ ପ୍ରଦର୍ଶକ ହୁଅ । ମୋ ନିଜପାଇଁ ମୋର କିଛି କରିବାର ନାହିଁ । ସୃଷ୍ଟିର ହିତପାଇଁ କଣ କରିବାର ଅଛି, ତମେ ବତାଅ । ତମେ ହାତ ଧରି ବାଟ କଢ଼ାଇ ନିଅ । ବୁଦ୍ଧି, ବଳ ଦିଅ । ଶକ୍ତି ଦିଅ । ସକ୍ଷମ କରାଅ । ମୋ ଚାରି ପାଖରେ ଯେଉଁମାନେ ଆତଯାତ ହେଉଛନ୍ତି, ସମସ୍ତଙ୍କୁ ସଦ୍‌ବୁଦ୍ଧି ଦିଅ ଭଗବାନ! ସମସ୍ତେ ବିଶ୍ୱର ଭଗବାନ୍ର ସତ୍ତାର ଅଖଣ୍ଡ ସ୍ଥିତିକୁ ଉପଲବ୍ଧି କରନ୍ତୁ । ଏକାଠି ହୋଇ ତୁମ ଇଚ୍ଛା ପୂର୍ଣ୍ଣ କରନ୍ତୁ ।'

ପ୍ରାର୍ଥନା ସାରି ଗଡ଼ନାୟକ ପୁଣି ନୀରବରେ ଧ୍ୟାନମଗ୍ନ ହେଲେ । ଦଶ ମିନିଟ ପରେ ସେ ଧ୍ୟାନରୁ ଉଠି କବିତା ନୋଟ୍‌କୁ ଖଣ୍ଡିଏ ଚିଠି ଲେଖିବାକୁ ବସିଲେ ।

ଚାକର ଜଳଖିଆ ନେଇ ଆସିଲା । କହିଲା, ଉମାଦେବୀ ତଳେ ଅପେକ୍ଷା କରିଛନ୍ତି । ଉପରକୁ ଡାକିଦେବି ?

ଗଡ଼ନାୟକଙ୍କୁ ହଠାତ୍ ଗୋଟାଏ କେମିତି କେମିତି ଲାଗିଲା । ଅଳ୍ପ ସମୟ ଧୀବଗ୍ର ହୋଇଗଲେ । ଗମ୍ଭୀର ହୋଇ ସେ ଚାକରକୁ କହିଲେ, ଡାକି ଦେ ।

ଠିଆ ହୋଇପଡ଼ି ଗଡ଼ନାୟକ ସ୍ୱାଗତ ଜଣାଇଲେ । ଉମା ପ୍ରଣାମ କଲା । ଉମାର ମୁହଁକୁ ଚାହିଁ ଗଡ଼ନାୟକ ଅବାକ୍ ହେଲେ । ବିଜୁଳି-ଧାରା ପରି ଏକ ସତେଜ ତରଳ ଶକ୍ତିର ତରଙ୍ଗ ତାଙ୍କର ମୁଣ୍ଡ ଭିତରେ ପଶିଗଲା ପରି ସେ ବୋଧକଲେ । ଉମା ଆଜ ଏପରି ଏତେ ନୂଆ ଦିଶୁଛି କାହିଁକି? ଏ ମୁହଁଟା ତ ଉମାର ସେ ଦିନର ମୁହଁ ନୁହେଁ । ଏପରି ଅସ୍ତବ୍ୟସ୍ତ ଭାବରେ କାହିଁକି ସେ ଆଜି ଆସିଛି ? ନିଜ ମନର ପ୍ରଶ୍ନ ତାଙ୍କୁ ସାଧାରଣ ପ୍ରଶ୍ନ ପରି ଲାଗିଲା ନାହିଁ । ଏ ପ୍ରଶ୍ନ ଭଗବତୀଙ୍କ ହାତର କଣ୍ଟୁରି ଭଳି ଗଡ଼ନାୟକଙ୍କର ମନ ଚମକେଇ ଦେଲା ।

ନିଜ ଚିତ୍ତକୁ ସ୍ଥିର, ନିଶ୍ଚଳ ଓ ସୁସ୍ଥ ରଖିବା ଲାଗି ପୁଣି ସେ ମନେ ମନେ ଭଗବାନଙ୍କୁ ଧ୍ୟାନ କଲେ ।

ଅନେକ ସମୟ ବିତିଗଲା ।

ପରସ୍ପର ପ୍ରତି ଅନେକ ଦିନର ଅସଂଖ୍ୟ ଅଭିଯୋଗ ନେଇ ଦିହେଁ ଆଜି ଭେଟା ଭେଟି ହୋଇଥିବା ଭଳି ଛକା ଛକ ହୋଇ ବସି ରହିଲେ । ଉମାର ଅଯତ୍ନ ଅସଂଯତ ଚେହେରା ବିକୃତ ଦେଖାଯାଉ ଥିଲା । ଗଡ଼ନାୟକ ମୁହଁ ଟେକି ଚାହିଁ ପାରିଲେ ନାହିଁ ।

ଗଡ଼ନାୟକ ତୁନି ରହିବା ଦେଖି ଉମା କହିଲା, 'ଗୋଟିଏ କଥା ମୁଁ କହିବାକୁ ଆସିଛି ।' ତାର କଣ୍ଠସ୍ୱର ଅସ୍ୱାଭାବିକ ଶୁଭିଲା ।

'କଣ ?' ଗଡ଼ନାୟକ ଅନାସକ୍ତ ଭାବରେ ପଚାରିଲେ ।

'ମୁଁ ସାଧାରଣ କାର୍ଯ୍ୟରୁ ନିଜକୁ ହଟେଇ ନେବି ଓ ଆପଣ ମୋତେ ଲୋକ ନିନ୍ଦାରୁ ବଞ୍ଚାଇବା ଲାଗି ଜୟପୁରରୁ ବଦଳି ମାଗି ଚାଲି ଯାଆନ୍ତୁ ।'

ମୁଣ୍ଡରେ ବଜ୍ର ପଡ଼ିଲା ପରି ଗଡ଼ନାୟକ ବାବୁ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେ । ପୁଣି କିଛି ସମୟ ନିରବ ହୋଇ ଉମାର ଅନ୍ତରର କଥା ବୁଝିବାକୁ ଚେଷ୍ଟାକଲେ ।

ସାତ ମିନିଟ୍ ପରେ କହିଲେ, ତୁମେ ଯାଅ ଉମା, ମୁଁ ଯଥା ସମୟରେ ଉତ୍ତର ଦେବି । ତମେ ଯାହା ଉଚିତ୍ ମଣିବ, କର । ମୋର ଆପତ୍ତି ନାହିଁ ।

'ମୁଁ ଏ ପରିସ୍ଥିତି ନିମନ୍ତେ ବଡ଼ ଦୁଃଖିତ । ନିଜେ ଯଦି କୌଣସି ତ୍ରୁଟି କରିଥାଏ, କ୍ଷମା କରିବେ । ଯାଉଛି...' ଉମା ଲୁହ ପୋଛିଲା ।

'ଯାଅ ଉମା । କବିତା ଯାଇଛି । ତୁମେ ବି ଯିବ । ମୁଁ ମଧ୍ୟ ଯିବି ।'

ଗଡ଼ନାୟକ ମୁଚୁଳା ତଳେ ମୁହଁ ଲୁଚେଇଲେ ।

ଉମା ଆଉ ଘରକୁ ନ ଯାଇ ସିଧା ଚାଲିଲା କଂଗ୍ରେସ ଅଫିସକୁ । ସୌଭାଗ୍ୟକୁ କଂଗ୍ରେସ ସଭାପତି, ଜିଲ୍ଲା ପରିଷଦ ଚେୟାରମେନ୍, ସ୍ଥାନୀୟ ଏମ୍. ଏଲ୍. ଏ. ଏକାଠି ବସି ଚାହା ପିଉଥିଲେ ।

ଉମା ପ୍ରଣାମ କରି ଠିଆ ହେଲା । ଏକାବେଳକେ ତିନିହେଁ ଉମାକୁ ପ୍ରତିନମସ୍କାର ଜଣାଇ ବସିବାକୁ କହିଲେ । ଉମାପାଇଁ କପେ ଚାହା ବରାଦ କରିସାରି ସମସ୍ତେ ତାର ପ୍ରଶଂସା କରିବାରେ ଶତମୁଖ ହୋଇ ଉଠିଲେ ।

ଉମା କାନ୍ଦି ପକେଇଲା । ସମସ୍ତେ ଅବାକ୍ ହୋଇଗଲେ ।

'କଥା କଣ ? ତମେ କାନ୍ଦୁଛ କାହିଁକି ଉମା ?' ସଭାପତି ପଚାରିଲେ ।

'ମୁଁ ଆଉ ଘରୁ ବାହାରକୁ ଯାଇ କିଛି କାମ କରି ପାରିବି ନାହିଁ, ମୋତେ କ୍ଷମା କରିବେ ।'

'କାହିଁକି ?'

'ମୁଁ ଦେଶର କାର୍ଯ୍ୟ କରିବା ଅନେକ ପସନ୍ଦ କରୁ ନାହାନ୍ତି । ଈର୍ଷା, ଅହଂକାରରେ ଜଳି ଯାଉଛନ୍ତି ।'

'ଜଳନ୍ତୁ ସେମାନେ । ତୁମର କଣ ଅଛି ? କର୍ତ୍ତବ୍ୟ ପାଳନ କରୁ କରୁ ସମାଜସେବା, ଦେଶସେବାର ଜୀବନ ମଧ୍ୟ ବାରମ୍ବାର ବିପନ୍ନ ହୋଇପାରେ । ତଥାପି ତାକୁ କାମ କରିବାକୁ ପଡ଼ିବ ।'

'ମୁନିସିପାଲିଟି ଏକ୍‌ଜିକ୍ୟୁଟିଭ ଅଫିସର ଏଠି ସେଠି କହି ବୁଲୁଛନ୍ତି ଯେ, ମୁଁ ପ୍ରତିରକ୍ଷା ପାଣ୍ଠି ଆତ୍ମସାତ୍ କରିଛି ।'

‘କେତେ ଜଣ କାଉଁସିଲର ମଧ୍ୟ ଏଥିରେ ମୁଣ୍ଡ ଲଉଥିବାର ଖବର ମୁଁ ପାଇଛି ।’ କଂଗ୍ରେସ ସଭାପତି ଧିରେ ଧିରେ କହିଲେ ।

ଉମା ଦୀର୍ଘ ଶ୍ୱାସ ଛାଡ଼ିଲା ।

ଚେୟାରମେନ୍ ଠିଆ ହୋଇପଡ଼ି କହିଲେ, ‘ଶୁଣ ଉମା! ଆମ୍ଭମାନଙ୍କ ଅନୁରୋଧରେ ତୁମେ ଘରୁ ଗୋଡ଼ କାଢ଼ି ଦେଶର ସେବା କରିବାକୁ ଅଣ୍ଟା ଭିଡ଼ିଛ ଏବଂ ମାସ କେତୋଟା ଭିତରେ ତୁମେ ଯେଉଁ ସାଫଲ୍ୟମଣ୍ଡିତ ପଦକ୍ଷେପ ନେଇଛ, ଗର୍ବରେ ଆମର ଛାତି ଫୁଲି ଉଠୁଛି ।’

ବିଭୂ ବାବୁ ଖଣ୍ଡିଏ ସିଗ୍ରେଟ୍‌ରେ ନିଆଁ ଲଗାଉ ଲଗାଉ କହିଲେ, ‘ମୋ ଗାଁର ଝିଅ ଉମା—ଆଜି ଲକ୍ଷେ ନାରୀଙ୍କୁ ପ୍ରତିରକ୍ଷା କାର୍ଯ୍ୟରେ ସନ୍ନିଯୁକ୍ତ କରାଇ ଦେଇ ପାରିଛି, ମୋ ଦେଶର ଯେଉଁ ଝିଅ ବୋହୂମାନେ ସାମାନ୍ୟ ବିପଦରେ ଅଧୈର୍ଯ୍ୟ ହୋଇ ବିଷ ପାନ କରି, ଗଳାରେ ଦଉଡ଼ି ଲଗେଇ ଆତ୍ମହତ୍ୟା କରନ୍ତି, ସେଇମାନଙ୍କ ହାତରେ ବନ୍ଧୁକ ଧରେଇ ରଣକ୍ଷେତ୍ରକୁ ପଠେଇ ଦେଇଛି—ଏହାଠୁଁ ବଳି ଗୌରବ, ଏହାଠୁଁ ବଳି ଆନନ୍ଦ ଆଉ କିଛି ନାହିଁ । ଏଥିପାଇଁ ଯଦି ତୁମେ ଈର୍ଷାର ପାତ୍ରୀ, ଏଥିପାଇଁ ଯଦି ତୁମେ ନିନ୍ଦାର ପାତ୍ରୀ, ମୁଁ ତୁମ୍ଭଙ୍କୁ ଅଭିନନ୍ଦନ ଜଣାଉଛି । ତୁମେ ପଛୁଅ ନାହିଁ ଉମା, ତୁମେ ଆଗେଇ ଚାଲ ।’

‘କୃଷ୍ଣ, ଯୀଶୁ, ଗାନ୍ଧୀ—ସମସ୍ତେ ଏଇ ଭ୍ରାନ୍ତ ମଣିଷର ଶୀକାର ହୋଇଛନ୍ତି ! ତୁମକୁ ଯଦି ମାରି ଦିଆଯାଏ, ତେବେ ବି ମୁଁ ଦୁଃଖିତ ହେବିନାହିଁ ଏବଂ ମୁଁ କହିବି ଏହାହିଁ ମୋ ଦେଶର ଗୌରବ ।’

ଉମା ଆଉ ବେଶି ସମୟ ସେଠି ରହି ପାରିଲା ନାହିଁ । ସେ ଆଉ କିଛି ନ କହି ଫେରି ଆସିଲା ।

ଉମା ନିଜ ଶୋଇବା ଘରର କବାଟ କିଳି କଇଁ କଇଁ ହୋଇ କାନ୍ଦିଲା!

‘ମଣିଷ କାହିଁକି ଅକାରଣରେ ସବୁବେଳେ ଭୁଲ୍ କରେ ?’ ଏ ପ୍ରଶ୍ନ ତାର ଛାତିକୁ କରତି ପକେଇଲା । ସେ ତ ବଡ଼ପଣ ଚାହେଁ ନାହିଁ, କ୍ଷମତା ଚାହେଁ ନାହିଁ, ଟଙ୍କା ପଇସା ଚାହେଁ ନାହିଁ, ସୁଖ ସୌଭାଗ୍ୟ ଚାହେଁ ନାହିଁ, ସେ ଚାହେଁ ସମଗ୍ର [illegible] ଚୈତନ୍ୟ, ଆନନ୍ଦ, ଶାନ୍ତି ଓ ମୁକ୍ତି । ତଥାପି ତାକୁ ନିନ୍ଦା କରାଯାଉଛି, ସମାଲୋଚନା କରାଯାଉଛି କାହିଁକି ? କାହିଁକି ମଣିଷ ଏମିତି କରେ, ଏମିତି ହୁଏ ?

ଭାରତର ପ୍ରତିରକ୍ଷା ଉଦ୍ୟମକୁ ସବୁମତେ ସାଫଲ୍ୟମଣ୍ଡିତ କରିବାକୁ ହେବ, ଏ କଥା ସମସ୍ତେ କହୁଛନ୍ତି, ଫଟୋଇ ହେଉଛନ୍ତି । ହେଲେ କାମ କଲା ବେଳକୁ କେତେ ଲୋକଙ୍କର ଏ ଅବସ୍ଥାର, ଏ ବ୍ୟଭିଚାରର କାହିଁକି ?

'ସେମାନେ ସରକାରୀ କର୍ମଚାରୀ ହୁଅନ୍ତୁ, କଂଗ୍ରେସ ହୁଅନ୍ତୁ କି କମ୍ୟୁନିଷ୍ଟ ଲୋକ ହୁଅନ୍ତୁ, ଅନ୍ୟ ଦଳର ହୁଅନ୍ତୁ କି ସର୍ବସାଧାରଣଙ୍କ ଭିତରର ଲୋକ ହୁଅନ୍ତୁ— ପ୍ରତିରକ୍ଷା ଉଦ୍ୟମକୁ ସୁଦୃଢ଼ କରିବା ବାଟରେ ଯେଉଁମାନେ ସ୍ୱାର୍ଥସାଧନ ପାଇଁ ଓ ବୃଥା ଗର୍ବ, ଅହଂକାରର ବଶବର୍ତ୍ତୀ ହୋଇ କଣ୍ଟା ପକାନ୍ତି, ସେମାନେ କଣ କଲେ ନିଜ କୁ ବୁଝି ପାରିବେ ?' ଭାବୁ ଭାବୁ ଉମା ନିଦରେ ଶୋଇ ପଡ଼ିଲା ।

ସକାଳ ସୂର୍ଯ୍ୟର ରମ୍ୟ କିରଣ ସ୍ପର୍ଶରେ ପୃଥିବୀ ମୋଡ଼ିଭାଙ୍ଗି ହେଲା, ଅଳସ ଛାଡ଼ିଲା । ପ୍ରାଣୀ ଜଗତର ବିଭ୍ରାନ୍ତ-କୋଳାହଳରେ ଆକାଶ ଧରିତ୍ରୀ ଗହ ଗହ ହେଲା । ସକଳ ଜୀବନର ଜୀବନ୍ତ ପ୍ରକ୍ରିୟା ଚଞ୍ଚଳ ହୋଇ ଉଠିଲା ।

ତଥାପି ଉମା ଶେଜରେ ପଡ଼ି ରହିଥିଲା । ତାର ମନର ଅବସାଦ ଅବୟବ ଗୁଡ଼ିକୁ ଅଚଞ୍ଚଳ କରି ଭିଡ଼ି ଧରିଥିଲା ଯେମିତି । ସେ ହାଇ ମାରିଲା ।

'ଆଜି ଆଉ ଶେଜ ଛାଡ଼ିବୁ ନାହିଁ କି ?' ଦୁଆରବନ୍ଧ ପାଖରେ ଠିଆ ହୋଇ ବୋଉ ପଚାରିଲେ ।

'ଉଠିବି ଯେ, ଉଠି କଣ କରିବି ଭାବୁଛି ?' ଉମା ଶେଜରେ ବସିଲା ।

'କି ଦୁନିଆ ଓଲଟି ପଡ଼ିଲା କି ? ସଭା ସମିତି କରୁଛି ନାହିଁ କି ?'

'ନାଇଁ । ମୁଁ ଆଉ କୁଆଡ଼େ ଯିବି ନାହିଁ । ମୁଁ ଆଉ କାହାକୁ ବିଶ୍ୱାସ କରି ପାରିବି ନାହିଁ ।'

'ଭଲ କଥା । ହଉ, ଉଠ୍ ଆଗ । ପଛେ ତୋର ଭାଗବତ ବାହାର କରିବୁ । କହୁଥିଲି ପରା, ଯେତିକିର ଲୋକ ସେତିକିରେ ରହିବା ଭଲ ।'

'ଶୀଘ୍ର ମୁଁ ମୋ ଦାୟିତ୍ୱରୁ ବିଦାୟ ନେଉଛି ବୋଉ । ଆଜି ଅଫିସକୁ ଯାଇ ଖାତା ପତ୍ର ସଜାଡ଼ି ସଭାପତିଙ୍କୁ ବୁଝାଇ ଦେବି ।'

ଗାଧୁଆ ପାଧୁଆ ସାରି ଦିନ ଦଶଟା ବେଳକୁ ଉମା କଂଗ୍ରେସ ଅଫିସକୁ ଗଲା ।

'ଜୁହାର ମା ।'

ସେ ଦିନର ସେହି କୁଷ୍ଠରୋଗୀ ଭିକାରୀଟି କଂଗ୍ରେସ ଅଫିସ ଫାଟକ ପାଖରେ ମୁଣ୍ଡପୋଡି ପ୍ରଣାମ କଲା ।

'ଓଃ ତୁମେ! ଭିତରକୁ ଆସ ।' ଉମା ନିବିଡ଼ ଆଗ୍ରହରେ ତାର ମୁହଁକୁ ଚାହିଁଲା ।

'ଭିତରକୁ ?'

'ହଁ ହଁ ଭିତରକୁ ଆସ । ଏହି ମହଲା ବିଭାଗ ପିଣ୍ଡାରେ ବସି ଆଳାପ କରିବା । ତମେ ମୋର କେତେ ନିକଟ ଲୋକ ବୁଝି ପାରୁନାହିଁ !'

ଭିକାରୀଟି ନୀରବରେ ଉମାର ପଛେ ପଛେ ଚାଲିଲା ।

କଂଗ୍ରେସ ଅଫିସକୁ ଆଜି କେହି ଆସି ନଥିଲେ । ଚପରାସି ଡାକ ଘରକୁ ଚାଲି ଯାଇଥିଲା । ଉମା ପିଣ୍ଡାରେ ଠିଆହୋଇ ଗପ ଆରମ୍ଭ କଲା ।

'ଭଲ ଅଛ ?' ଉମା ପଚାରିଲା ।

'ହଁ ମା ସେମିତି । ହେଲେ ଯୁଦ୍ଧ କଥା ପଚାରିବାକୁ ଆସିଥିଲି । କଣ ହେଲା ମା ? ଅନେକ ଦିନ ହେଲା ତୁମକୁ ଦେଖିବାକୁ ବି ମନ ହେଉଥିଲା ।'

'ତୁମେ ଯେଉଁ ସାହାଯ୍ୟ ଦେଇଥିଲ, ତା ଖୁବ୍ କାମରେ ଲାଗିଛି । ଆମ ଜିଲ୍ଲାରୁ ଯେଉଁ ଯୁବକ ଯୁବତୀମାନେ ଯୁଦ୍ଧବିଦ୍ୟା ଶିଖିବାକୁ ଗଲେ, ସେମାନେ ଏଠାରୁ ଯିବା ପୂର୍ବରୁ ତମ ଟଙ୍କାରେ ଉଲ୍ କିଣି, ସ୍ୱେଟାର ବୁଣି ଯୁଦ୍ଧ କରୁଥିବା ଯବାନମାନଙ୍କ ଠାକୁ ପଠାଇଛନ୍ତି । ଏଥିପାଇଁ ସାରା ଦେଶ ତମର ପ୍ରଶଂସା କରିଛି । ଖବର କାଗଜରେ ତମର ଫଟୋ ବି ବାହାରିଥିଲା, ଦେଖିଛ ନା ?'

'ଦେଖିଛି ମା ! ସ୍କୁଲ ପିଲେ ମୋତେ ଦେଖାଇଛନ୍ତି । ସେ ସବୁ ତୁମର ଦୟା, ତୁମ ଉଦାରତାର ଫଳ । ହେଲେ ମୋତେ ସେଥିରୁ କଣ ମିଳିବ ମା ? କୁହ, ଯୁଦ୍ଧ କଣ ହେଲା ?'

'ଯୁଦ୍ଧ ବନ୍ଦ ହୋଇଯାଇଛି । ଚୀନ୍‌ମାନେ ଉପରମୁ ଯୁଦ୍ଧ ବନ୍ଦ କରି ଦେଇଛନ୍ତି । ହେଲେ ଆମ ଦେଶର ଅନେକ ଜାଗା ସେମାନେ ମାଡ଼ି ବସିଛନ୍ତି । ସେ ସବୁ ଉଦ୍ଧାର କରି ଆଣିବାକୁ ପଡ଼ିବ । ଆଉ ଥରେ ଯଦି ସେମାନେ ଆକ୍ରମଣ କରନ୍ତି, ତାଙ୍କୁ ହଟାଇ ଦେବାପାଇଁ ସାବଧାନ ରହିବାକୁ ହେବ ।'

'ହଁ ମା ଆମର ମାଟି ଆମକୁ ଛଡ଼େଇ ଆଣିବାକୁ ହେବ ।'

'ସେଥିପାଇଁ ଏ ଦେଶର ଲୋକମାନେ ଏକଜୁଟ୍ ହେଲେ ତ !'

'ହେବେ ନାହିଁ ? କାହିଁକି ହେବେ ନାହିଁ ମା ? ଦେଶପାଇଁ ଏକଜୁଟ୍ ହେବେ ନାଇଁ ?'

'କେତେଜଣ ବଡ଼ପଣିଆ ଦେଖାଇ ସ୍ୱତନ୍ତ୍ରମତ ଅଣବାଟରେ ଯାଉଛନ୍ତି ଯେ ।'

'ସେମାନଙ୍କୁ ଗୁଳି କରି ମାରି ଦିଅ ମା ! ସେମିତି ଲୋକ ଦେଶରେ ଥିଲେ ଅମଙ୍ଗଳ ହେବ ।'

'ନା ଗୁଳି କରିବା ଦରକାର ନାହିଁ । ମଣିଷର ପାପ ଇଚ୍ଛା କେବେ ସଫଳ ହୁଏନାହିଁ । ସେମାନେ ଆପଣା ଖାଲରେ ଗୋଡ଼ ଖୋସେଇ ପଡ଼ି ମରିବେ । ହେଲେ ଏଇକ୍ଷଣି ଟିକିଏ ଗୋଳମାଳ କରୁଛନ୍ତି ।'

'ତାଙ୍କୁ ଜେଲ୍‌ରେ ଭର୍ତ୍ତି କରାଯାଉଛି ପରା !'

'ସେମାନେ ଅଲଗା ଲୋକ । ଆଉ ଥୋକେ ଆମରି ଭିତରେ, ଖୋଳ ଭିତରେ ପଶି ଯାଇଛନ୍ତି । ଭିତରେ ଭିତରେ ଦେଶଦ୍ରୋହୀ କାମ କରନ୍ତି ।'

'ହଁ ?...'

'ସେପରି ଲୋକମାନଙ୍କ ଚକ୍ରାନ୍ତରେ ମୋର ମଧ୍ୟ ବଦ୍‌ନାମ ହୋଇଛି । ମୁଁ ବି ଦେଶ କାମରୁ ହଟି ଯାଉଛି ।'

'କାହିଁକି ମା, ତମେ କାହିଁକି ହଟିଯିବ ? ତମକୁ କିଏ କାହିଁକି କହିବ ?'

'କହୁଛନ୍ତି । ବହୁତ୍ କହୁଛନ୍ତି ।'

ଭିକାରି ତଟସ୍ଥ ହେଲା ।

'ଗୋଟିଏ କାମ କରିବ ?' ଉମା ସତର୍କତାର ସହିତ ପଚାରିଲା ।

'କୁହ ମା !'

'ତୁମ ଭଳି ଦେଶପ୍ରାଣ ଭିକାରି ଠାରୁ ଏ ଦେଶର ହଜାର ହଜାର ଜ୍ଞାନାନ୍ଧ, ଧନାନ୍ଧ, କ୍ଷମତାନ୍ଧ ଅଜ୍ଞାନ ଲୋକ ବହୁକଥା ଶିଖିବାର ଅଛି ।'

ଆଉ କିଛି କହିବା ପୂର୍ବରୁ ଉମା ନୀରବରେ କେତେ କଣ ଚିନ୍ତା କରିବାକୁ ଲାଗିଲା । ଭିକାରିଟି କିଛି ନ ବୁଝିଲା ପରି କଂଗ୍ରେସ୍ ଅଫିସ ସ୍ତମ୍ଭ ଉପରେ ଭିଡ଼ା ହୋଇଥିବା ନାମ ଫଳକ ମଝିର ଅରଟ ଚକ୍ରଟିକୁ ନିରୀକ୍ଷଣ କରିବାରେ ଲାଗିଲା ।

'ତମେ ଗୋଟିଏ ଆଶ୍ରମ କର ।' ଉମା ଖୁବ୍ ଜୋର୍ ଦେଇ ଭିକାରୀକୁ କହିଲା । ଭିକାରୀଟି କାବା ହୋଇ ଅର୍ଥହୀନ ଦୃଷ୍ଟିରେ ଅନେଇ ରହିଲା ଉମାର ମୁହଁକୁ ।

'ସହରର ଏଇ ପେଟ କପଟିଆ ଲୋକମାନଙ୍କ ଆଖି ନ ପାଇବା ଭଳି ଗୋଟିଏ ନିଗୁଡ଼ିଆ ଥାନରେ ଖଣ୍ଡିଏ ଘର କରିବ । ତା ନାଁ ଆଶ୍ରମ । ସେଠି ଅକ୍ଷମ, ରୁଗ୍‌ଣ ନିରାଶ୍ରୟ ଲୋକମାନଙ୍କୁ ଆଶ୍ରୟ ଦିଆଯିବ । ତାଙ୍କର ତତ୍ତ୍ୱ ନିଆହେବ । ସମସ୍ତଙ୍କୁ ସେଠି ନାନା ଧନ୍ଦା ଯୋଗାଇ ଦିଆଯିବ । ସେଠି ସମସ୍ତେ ଏ ସାରା ବସୁଧାକୁ କୁଟୁମ୍ବ ମଣିବେ । କେବଳ ଆପଣା ପେଟପାଟଣା, ଆପଣା ପିଲା କୁଟୁମ୍ବ ଚିନ୍ତା ସେମାନଙ୍କର ନଥିବ । ଦେଶପାଇଁ ଓ ବିଶ୍ୱ-ବ୍ରହ୍ମାଣ୍ଡର ମଙ୍ଗଳ ପାଇଁ କାମ କରିବାକୁ ସେଠାରେ ଯୁବକ ଯୁବତୀମାନଙ୍କୁ ତାଲିମ୍ ଦିଆଯିବ । ମଣିଷ ଗଢ଼ାହେବ ।'

ଭିକାରୀଟି ଏ କଥା ଶୁଣି ଆହୁରି ଅଧିକ ଅବାକ୍ ହୋଇ ପଚାରିଲା, ତମେ କଣ କହୁଚ ମା ? ସେ କଥା କେଉଁଠି ଆଉ ମୁଁ ···

'କିଛି ଚିନ୍ତା ନାହିଁ । ମୁଁ ଯେତେବେଳେ ଯାହା କହୁଥିବି, ତମେ କରି ଚାଲ । ବାକି ସବୁ ମନକୁ ହେବ ।'

'ହେଉ ।' ଭିକାରୀଟି ଉତ୍ତରରେ ସମ୍ମତ ହେଲା ।

'ଆସନ୍ତା ଶୁକ୍ରବାର ଦିନ ଭୋର୍ ଚାରିଟା ବେଳେ ବସ୍ ଷ୍ଟାଣ୍ଡରେ ମୋତେ ଦେଖା କରିବ ?'

'କରିବି ମା !'

'ତା ହେଲେ ଯାଅ । ସେ ଦିନ ବଡ଼ ସକାଳୁ ମଲକାନ୍‌ଗିରି ବସ୍ ଛାଡ଼ିବା ପୂର୍ବରୁ ତମେ ସେଠି ହାଜର ହୋଇଥିବ ।'

'ହେଉ ମା ।'

'ଯାଅ ତା ହେଲେ ।'

ଉମା କଂଗ୍ରେସ ଅଫିସ ଭିତରକୁ ପଶି ଯାଉ ଯାଉ ଲେଉଟି ଆସି ଭିକାରୀକୁ ପଛରୁ ତାକି କାନ ପାଖରେ ଚୁପ୍ ଚୁପ୍ କରି କହିଲା— 'ଏ କଥା ଆଉ କାହାକୁ କହିବ ନାହିଁ । ତମ ଛଡ଼ା କେହି ନ ଜାଣନ୍ତୁ ଯେମିତି । ଜାଣିଲେ ସେମାନେ ବିଘ୍ନ ଘଟାଇବେ ।'

'ହେଉ ମା । କେହି ଜାଣିବେ ନାହିଁ ।'

ଦିନ ଗୋଟାଏ ହେବ ।

ଗୃହକର ବାଧ୍ୟ କରିବାରୁ ଗଡ଼ନାୟକ ଖାଇବାକୁ ବସିଲେ । ଆଜି କଣ ଏମିତି ଲାଗୁଛି କେଜାଣି, ଖାଇବାକୁ ପିଇବାକୁ କି କିଛି କରିବାକୁ ମନ ହେଉନାହିଁ । ସକଳ ଉତ୍ସାହ ଅପସରି ଗଲାପରି ଲାଗୁଛି । ତାଙ୍କର ମନେ ହେଉଛି, ଯେମିତି କି ଆଜି ସବୁର ମଣିଷକୁ ଗ୍ରାସ କରିଛି ଅସ୍ଥିରତା, ଅନିଶ୍ଚିତତା, ଭୟ! ଚୀନ୍ ଶାସକମାନେ ଶାନ୍ତ ଶିଷ୍ଟ ଭାରତ ଉପରେ ଆକ୍ରମଣ କଲେ କାହିଁକି କି? ଆପଣା ଅସ୍ତିତ୍ୱର ସ୍ଥିରତା ଓ ସ୍ଥାୟିତ୍ୱ ପ୍ରତି ତାଙ୍କର ସନ୍ଦେହ, ତାଙ୍କର ଭୟ ତାଙ୍କୁ ଏପରି ଉଦ୍‌ଭ୍ରାନ୍ତ କରିଛି । ପାକିସ୍ଥାନ ଈର୍ଷାରେ ଅନ୍ଧ ହୋଇ ଯାଇଛି । ଏ ସୁଯୋଗରେ ଚୀନର ପୁନର୍ବାର ଆକ୍ରମଣ ଧମକ, ରୁଷର ଗାମ୍ଭୀର୍ଯ୍ୟ, ଆମେରିକାର ଅଯାଚିତ ଆଲିଙ୍ଗନ— ଏ ସବୁ ଏହି ପୃଥିବୀର ଜଣେ ଜଣେ ମଣିଷ ସ୍ୱଭାବର ସ୍ୱରୂପ ନୁହେଁ କି? ଏହି ଦେଶମାନେ ଯେପରି, ପୃଥିବୀର ମଣିଷମାନେ ବି ସେହିପରି । ସ୍ୱଭାବରେ, ଆଚରଣରେ ଅଲଗା ଅଲଗା । ଚାରିଆଡ଼େ ଖାଲି ଜଣକ ଉପରେ ଆଉ ଜଣେ ଚଢ଼ି ଯିବାର ନିଷ୍ଠୁର ମତଲବ— ଆଉ ଯାନ୍ତ୍ରିକ ପ୍ରଭାବର ତୀବ୍ର ପ୍ରତିଫଳନରେ ସମାଜ, ଶାସନ, ସାହିତ୍ୟ, ରାଷ୍ଟ୍ର ଓ ଜୀବନ ସବୁ ସଂକୀର୍ଣ୍ଣ ଗୋଷ୍ଠୀଭୁକ୍ତ ହୋଇ ପଡୁଛି । ସେଥିରୁ ନିସ୍ତାର ହିଁ ମଣିଷ ସଭ୍ୟତାର ମୁକ୍ତି । ତାହା ହିଁ ଏକ ଅଲୌକିକ ଯୁଗାନ୍ତର । ଏହି ଯୁଗାନ୍ତର, ଏହି ପରିବର୍ତ୍ତନ କେବେ ସ୍ୱୟଂ ସମ୍ଭବ ହେବ କେଜାଣି!

ଗଡ଼ନାୟକ ଭାତ ଥାଳିକୁ ଚାହିଁଲେ । କଣ ଖାଉଛନ୍ତି ସେ? ଯେମିତି ଭାତ ସେମିତି ଅଛି । ଉଙ୍ଗାରି ଉଙ୍ଗାରି ବସିଛନ୍ତି । ଚୁଲ୍କାଟାରେ ଅଇଁଠା ହେଲେ ମାତ୍ର । ବୋଧହୁଏ ଏଇ ମାନସିକ ଦୁଶ୍ଚିନ୍ତାରୁ ନିସ୍ତାର ପାଇବାକୁ ହାତ ଧୋଇସାରି ସେ ଚିଠି ଲେଖି ବସିଲେ ।

ଟିକିଏ ଚିନ୍ତା କରି ଆରମ୍ଭ କଲେ—

ଉମା,

କ୍ଷମା କରିବ, ଏକ୍ଷଣି ମୋର ବଦଳି ହୋଇପାରୁ ନାହିଁ । ମୁଁ ଏଠାରୁ ଯାଉନି । ତୁମେ ମୋ ପାଖକୁ ଆଉ ନ ଆସିବ ଯଦି ନ ଆସ! ମୋର କିଛି ଆପତ୍ତି ନାହିଁ । କିନ୍ତୁ କେତେଜଣ ପରଶ୍ରୀକାତର ସାମାଜିକ ଅପରାଧୀଙ୍କ କୁପ୍ରବୃତ୍ତିରେ ତମେ ଯେ ଉପ୍ଦ୍ରୁତ ହୋଇ ପଡୁଚ, ଦେଖି ଦୁଃଖ ଲାଗୁଛି । ତମେ ବିଶ୍ୱାସ କର ଉମା, ସେପରି କୌଣସି ହୀନ ପ୍ରଲୋଭନ ବା କାମନାର ମୂଳୀଭୂତ ପ୍ରରୋଚନାରେ ମୁଁ ତୁମର ସାହାଚର୍ଯ୍ୟ କି ସାନିଧ୍ୟ କେବେ ଚାହିଁ ନଥିଲି କି ଚାହୁଁନାହିଁ । ମୁଁ ଯଦି କୌଣସି ପ୍ରକାରେ ତୁମପ୍ରତି ଆକୃଷ୍ଟ ହୋଇ ପଡ଼ିଥାଏ, ତାର କାରଣ ହେଉଛି— ତୁମର ଯଥାର୍ଥ ଉପଲବ୍ଧି ଓ ବିଷୟବୋଧ କରି ପାରିବାର ସ୍ୱଭାବ ସୁଲଭ ସାମର୍ଥ୍ୟ ପ୍ରତି ମୋର ସାତ୍ତ୍ୱିକ ଅନୁରକ୍ତି ! ମୁଁ ମନେକରେ, ରୂପ ଲାବଣ୍ୟ ଓ ତାରୁଣ୍ୟ ବ୍ୟତୀତ ତୁମର ଅନ୍ୟ ଗୁଣଗୁଡ଼ିକ ଏକ ଏକ ଭଗବଦ୍ ଆଶୀର୍ବାଦ ଛଡ଼ା ଆଉ କିଛି ନୁହେଁ । ମୋତେ କାହିଁକି ଏପରି ଲାଗୁଛି, ସେ କଥା ଆଜି କହି ପାରିବି ନାହିଁ । ଜାଣେନା, ଏହି ଆକର୍ଷଣର ଅନ୍ୟ ଏକ କାରଣ ଏ ଜନମରେ ସିଦ୍ଧିଲାଭ ଲାଗି ଉପଯୁକ୍ତ ସାହଚର୍ଯ୍ୟର ଅଜ୍ଞାତ ଆବଶ୍ୟକତାର ଆହ୍ୱାନ କି ପୂର୍ବ ଜନ୍ମର ସାର୍ଥକ ସମ୍ବନ୍ଧ ସମ୍ଭୂତ ଅସମାପ୍ତ କ୍ରିୟାର ଅସ୍ପଷ୍ଟ ବ୍ୟାକୁଳତା— କେଜାଣି । ଯାହାହେଉ, ଯଦି ଏକ ଅଖଣ୍ଡ ବିଶ୍ୱ ସତ୍ତାର ଗୋଟିଏ ଗୋଟିଏ ଅବିଚ୍ଛିନ୍ନ ଅଂଶ ପ୍ରତ୍ୟେକଙ୍କ ଆତ୍ମା, ମନ, ଶରୀର— ତେବେ ଗୋଟିଏ ଶୁଦ୍ଧ ଶ୍ରଦ୍ଧାଳୁ ନିକଟତମ ଆତ୍ମାର ନିବିଡ଼ ଆବେଦନକୁ ଆଉ ଏକ ପ୍ରିୟ ଆତ୍ମା ଏଡ଼ିଦେଇ ପାରିବ କେମିତି ? ଆଉ କିଛି ନ ହେଉ ପଛେ, ଜୀବନର ଜୟଯାତ୍ରା ପଥରେ ଯଦି କେବେ ଅନିବାର୍ଯ୍ୟ ବାଧା ଅସୁବିଧା ହାବୁଡ଼ରେ ପଡ଼ି ଏକୁଟିଆ ଲାଗେ, ଆଶା ଭରସା ଶୂନ୍ୟ ମନେହୁଏ, ତେବେ ସେହି ମୁହୂର୍ତ୍ତରେ ଇଚ୍ଛାକଲି ମାତ୍ରେ ଅକପଟ ଭାବରେ ପବିତ୍ର ସ୍ନେହ-ସହଯୋଗିତାର ବେଗ ଢାଳିଦେବା ଲାଗି ସହଜରେ ଆଗେଇ ଯାଇ ପାରେ ଯେ କୌଣସି ନିକଟତମ ଶ୍ରଦ୍ଧାଳୁ ଆତ୍ମାର ପ୍ରବାହ ! ବିପଦକୁ ଡରି ଇତର ଭାବରେ ସେ ଆଡ଼େଇ ହୋଇ ରହିପାରେ ନାହିଁ । ଅବିଚ୍ଛିନ୍ନ ପରା ?

ମନେ ରଖିଥିବ— ପ୍ରତିବନ୍ଧକ ସଂକୁଳ ଜଗତରେ ଏ ପ୍ରକାର ସରଳ ବନ୍ଧୁତାର ଅସରନ୍ତି ଆତ୍ମୀୟ ନିବିଡ଼ତା ମଣିଷ ପ୍ରାଣରେ ପରମାନନ୍ଦର ହିଲ୍ଲୋଳ ଛୁଟାଇ ଦେବାକୁ ସର୍ବଦା ସକ୍ଷମ, ପ୍ରସ୍ତୁତ ଓ ଜାଗ୍ରତ ରହିଥାଏ । ଘୋର ନିରାଶା,

ବିଫଳତା, ବିମୁଖତା ମଧ୍ୟରେ ବି ବିକଶିତ ହୋଇ ଉଠିପାରେ ଆଶା, ସଫଳତା, ଆନନ୍ଦ ଓ ନୂତନ ଜୀବନ— ଗଭୀର ଆତ୍ମୀୟତାର ଏହି ଘନିଷ୍ଠ-ଅମୃତ-ସ୍ପର୍ଶରେ !

ଆଉ ଗୋଟିଏ କଥା ଉମା, ଦୁନିଆରେ ମନ୍ଦ ବୋଲି କିଛି ନାହିଁ । କେହି ଖରାପ ନୁହନ୍ତି । ଯେଉଁମାନେ ନିଜକୁ ବୁଝିପାରନ୍ତି ନାହିଁ, ସେମାନେ ହିଁ ଅନିଷ୍ଟକାରୀ, ସେମାନେ ହିଁ ମନ୍ଦ ଲୋକ । ସେମାନଙ୍କ ନିକଟରୁ ଦୂରେଇ ଯିବା ଉଚିତ୍ । ଆତ୍ମନିରୀକ୍ଷଣ କରିବା ଲାଗି ତାଙ୍କୁ ସୁଯୋଗ ଦେବା ଆବଶ୍ୟକ । କିନ୍ତୁ ଯେଉଁମାନେ ଆତ୍ମୀୟ, ଯେଉଁମାନେ ପ୍ରକୃତ ବନ୍ଧୁ, ତାଙ୍କଠାରୁ ଦୂରେଇ ଗଲେ କର୍ମ କରିବ କାହାକୁ ନେଇ ? ଭାବିବ । ଇତି ।

ଗଡ଼ନାୟକ'

ଗଡ଼ନାୟକ ବାବୁ ଚିଠି ଲେଖିସାରି ଶେଜ ଉପରେ ଗଡ଼ି ପଡ଼ିଲେ । ଟିକିଏ ପରେ ଚିଠିଟାକୁ ଆଉଥରେ ଭଲକରି ପଢ଼ି ଭାବିଲେ, କାହିଁକି ସେ ଏ ଚିଠି ପଠେଇବେ ? ଉମା ଭୁଲ୍ ବୁଝିବ ନାହିଁ ତ ?

ପୁଣି ସେ ଭାବିଲେ, ଭୁଲ୍ ବୁଝୁ କି ଯାହା ବୁଝୁ । ପର ମନକୁ ଜଗି ଜଗି ମଣିଷ କେତେ ଚଳିବ । ହାତେ ମାପି ଚୃଖଣ୍ଡେ ଚାଲୁ ଚାଲୁ ବି ଶହେଟା କଣ୍ଟା ପାଦରେ ବାଜୁଛି । ମୁଣ୍ଡ ଛୁଡ଼ିପଡୁ ପଛେ କର୍ତ୍ତବ୍ୟ କରି ଯିବାକୁ ହେବ ।

ଚିଠିଟିକୁ ଟେବୁଲ୍ ଉପରେ ରଖିଦେବାକୁ ଯାଇ ଗଡ଼ନାୟକ ଦେଖିଲେ, ବହି ପତ୍ରଗୁଡ଼ିକ, ପାନିଆ, ଚୁଡ଼ିକାଠି, ଦାନ୍ତଘୋଷା ବ୍ରସ୍, କ୍ଷୁର ପେଡ଼ି ଇତ୍ୟାଦି ଛିନ୍ନ ଛତ୍ର ହୋଇ ପଡ଼ିଛି । ମନରେ ଗ୍ଳାନି ଚରି ପଶିଲା । କବିତା ମନେ ପଡ଼ିଲା । ପର ମୁହୂର୍ତ୍ତରେ ଦୁର୍ବଳତାକୁ ଘୋଡ଼ାଇ ଦେଇ ଭାବନା ପ୍ରସାରିତ ହେଲା— ଯେଉଁ ବଡ଼ ବଡ଼ ରାସ୍ତାମାନଙ୍କରେ ଶହ ଶହ ବଡ଼ ବଡ଼ ଲୋକ ଅହର୍ନିଶି ଯା ଆସ କରୁଥାନ୍ତି, ସେହି ବାଟ କଡ଼ରେ ତ ଅର୍ଦ୍ଧମୃତ ମଣିଷ ପଲ— ଭିକ୍ଷୁକ ହୁଅନ୍ତୁ ପଛେ, ଛଟପଟ ହୋଇ, ଛିନ୍ନ ଛତ୍ର ହୋଇ ପଡ଼ିଥାନ୍ତି, କେହି ତ ସେମାନଙ୍କର ତତ୍ତ୍ୱ ନିଅନ୍ତି ନାହିଁ । ମଣିଷ ଆତ୍ମାର ସେ ଛଟପଟ ପ୍ରତ୍ୟକ୍ଷରେ ଦେଖି ଦେଖି ମଧ୍ୟ ପାରିବାର, ଜାଣିବାର ନର ନାରୀମାନଙ୍କୁ ଟିକିଏ ଲାଜ ମାଡ଼େନାହିଁ । ଏହି ଶୁଖିଲା କାଗଜ କାଳୀର ବହି ପତ୍ରଗୁଡ଼ିକ ପାଇଁ ସେ ଛଟପଟ ହେବେ କାହିଁକି ? ପଡ଼ିଥାଉ ସେମିତି । ଚାକରକୁ ମଧ୍ୟ ଡାକିଲେ ନାହିଁ । ଚିତ ହୋଇ ଶୋଇ ଆଖି ବୁଜିଲେ । ଇସ୍, କେଡ଼େ ଅନ୍ଧାର ଦିଶୁଛି

ଏ ଜଗତଟା ! ଏଠି କିଛି ନାହିଁ, କେହି ନାହିଁ ? ସବୁ ଅଳୀକ, ସବୁ ମାୟା, ସବୁ ଖାଲି ସ୍ୱପ୍ନ, ସବୁ ମିଥ୍ୟା ?

କ୍ରମେ ସେ ଗଭୀର ନିଦରେ ଘୁମୁଡ଼ି ମାରିବାକୁ ଲାଗିଲେ ।

କବାଟ ସେମିତି ଅଣ ଆଉଜା ରହିଥିଲା । ଶଠି ଖୋଲା ପଡ଼ିଥିଲା । ଚନ୍ଦ୍ରାଧାରା ଅଚ୍ଛିଣ୍ଣା ହୋଇ ବୋହି ଚାଲିଥିଲା ମନ-ନଦୀର ଅତଳ ତଳେ ।

**ଗ**ତ କାଲିର ଅପଢ଼ା ଖବର କାଗଜଗୁଡ଼ିକ ଟେବୁଲ ଉପରେ ପଡ଼ିଥିଲା । ଖରାବେଳଆ ଆସ୍ଥାସ ଭାଙ୍ଗୁ ଭାଙ୍ଗୁ ଉମା ଖବର କାଗଜ ପଢ଼ି ବସିଲା ।

'ସୀମାନ୍ତରେ ଚୀନ୍‌ର ବିପୁଳ ସମର ସଜା' 'ଦେଶବାସୀଙ୍କୁ ପ୍ରଧାନ ମନ୍ତ୍ରୀଙ୍କ ସତର୍କ ବାଣୀ !'

ପରୀକ୍ଷାର୍ଥିମାନଙ୍କ ଫଳ ବାହାରିଥିବା କାଗଜ ପୃଷ୍ଠା ଉପରେ ତରବରରେ ଆଖି ବୁଲେଇଲା ପରେ, ତୀକ୍ଷ୍ଣ ଦୃଷ୍ଟିରେ ସେ ଖବରର ପ୍ରତ୍ୟେକ ଧାଡ଼ି ଅତିକ୍ରମ କରି ଚାଲିଲା ।

ମନ ଭିତରେ ବାଜି ଉଠିଲା ନୂତନ ଉଦବୋଧନର ବାଜଣା । ମନ ଆନ୍ଦୋଳିତ ହେଲା । ବେଳକୁ ବେଳ ମୁଣ୍ଡ ଭିତରଟା ଘାରିହେବାକୁ ଲାଗିଲା । କାହା ଆଗରେ ମନଖୋଲି, ହୃଦୟ ମେଲା କରି ଆଳାପ କରିବାକୁ ସେ ବ୍ୟଗ୍ର ହୋଇ ଉଠିଲା । ମନ କଥାଗୁଡ଼ାକ କହି ନ ପକେଇଲେ ସତେ ଯେମିତି ସେ ସ୍ଥିର ହୋଇ ରହି ପାରିବ ନାହିଁ । କିନ୍ତୁ କାହାକୁ କହିବ ? ବୋଉକୁ କହିଲେ ହୁଅନ୍ତା । ପୁଣି ଭାବିଲା, ଲାଭ ନାହିଁ । ସେ କଣ ବୁଝି ପାରିବ ? ବୁଝୁ ନ ବୁଝୁ, ତାର ବେଳ ବା କାହିଁ ? ଦିଅଁଙ୍କ ଖଟୁଲି ଧୂଆଠୁଁ ପୂଜା ପାଠ ଯାଏ ଯେତିକି କାମ ସେ ନିଜେ କରେ, ବେଳ ଅଣ୍ଟେ ନାହିଁ । ନା ଥାଉ । ଓଲଟି ମନ କୋଣର ଦୁଃଖ ଜାଣି ପାରିଲେ ସେ ନିଜେ ଭିତରେ ଭିତରେ ଜଳି ପୋଡ଼ି କଣ୍ଟା ଯାଇବ ।

ଆଉ କାହାକୁ କହିବ ? ଆଖି ଆଗରେ ହସି ହସି ଠିଆ ହୋଇ ପଡ଼ିଲା ଗଡ଼ନାୟକଙ୍କ ଛବି ।

ଉମା ମନ ଦୃଢ଼ କରି ଭାବିଲା, ନା ଗଡ଼ନାୟକଙ୍କ ଠାକୁ ସେ ଯିବ ନାହିଁ । ହୁଅନ୍ତୁ ପଛେ ସେ ବଡ଼ ଲୋକ, ଭଲ ଲୋକ— ତାର କଣ ଅଛି ? ତା ସାଙ୍ଗରେ ତାଙ୍କର ସମ୍ବନ୍ଧ କଣ ? ବନ୍ଧୁ ? ଏମିତି କେତେ ବନ୍ଧୁତାର ପରିଣତି ସେ ଦେଖିଲାଣି, ଶୁଣିଲାଣି । ବହୁ ଘାଟରେ ପାଣି ପିଇ ପିଇ ଆକତା ହୋଇଛନ୍ତି ଯେଉଁମାନେ, ସେମାନଙ୍କ ସହ ଅନେକ ଥର ମିଶି, ଆଳାପ ଆଲୋଚନା କରି କେତେ ବନ୍ଧୁତାର କେତେ କାହାଣୀ ସେ ଜାଣିଲାଣି ।

ସେ ଦିନ କବିତା ଯାହା କହୁଥିଲା, ମନେ ପଡ଼ିଗଲା— ଏଇ ବନ୍ଧୁମାନେ କାମ ପଡ଼ିଥିଲା ବେଳେ, ମନ ପାଇଥିଲା ବେଳେ ପାଖେଇ ଆସନ୍ତି, କୋଣେଇ ଘୁଞ୍ଚାନ୍ତି, ହାତ ମିଳାନ୍ତି । କାରଣ ଥାଉ କି ନ ଥାଉ କିଛି ଦିନ ପରେ କାଳର ଇଂଗିତରେ ପୁରୁଣା ଲୁଗା ପାଲଟିଲା ପରି ମନ ବଦଳାଇ ଦିଅନ୍ତି । ସାଙ୍ଘାତିକ ଭାବରେ ଓଲଟି ପଡ଼ନ୍ତି । ଦରକାର ହେଲେ ଗୋଇଠା ମାରି ଦୂରେଇ ଦିଅନ୍ତି ପାଖରୁ । ଚୀନ୍ ସରକାର ପରି । ଏ ବି ସେମିତି ନ କରିବେ, ସେମିତି ନ ହେବେ, କି ନିଶ୍ଚିତତା ଅଛି ?

ଲୋକଙ୍କର ସନ୍ଦେହୀ ଆଖି ବି କମ୍ ନୁହେଁ ତ ! ସେ ଆଖିର ଏଡ଼େ ଏଡ଼େ ଦାନ୍ତ, ତାଡ଼କା ଅସୁରୁଣୀର ଦାନ୍ତ ପରି । ପାଖରେ ପାଇଲେ ଝୁଣି ଖାଇଯିବ ।

ନା ତାଙ୍କ ନିକଟକୁ ଯିବନାହିଁ । ଆଉ··· କାହା ନିକଟକୁ ଯିବ ? ଗୋଟି ଗୋଟି କରି ବହୁ ବନ୍ଧୁ, ସାଙ୍ଗ ସାଥିଙ୍କୁ ସେ ମନେ ପକାଇଲା । କିନ୍ତୁ ହାୟ ! ସମସ୍ତେ ସର୍ବଦା ତାକୁ ତଳେ ପକେଇ ଦେଇ ଦଳି ଚକଟି ଯେ ଯାହାର ବାଟରେ ଉପରକୁ ଉଠି ଯିବାକୁ, ଜନତାର ଆଗି ଦୃଷ୍ଟିଆ ହେବାକୁ ବ୍ୟସ୍ତ । କାହାରି ହେଲେ ବେଳ କାହିଁ ?

ତାଙ୍କର ଏ ଉପରକୁ ଉଠିବା ମୁହଁରେ ନିଆଁ ପଡୁ !

ଉମା ଗାଲରେ ହାତ ଦେଇ ପୁଣି ଭାବିଲା, ନା ଏମାନଙ୍କ ଆଗରେ ବରଂ ମନକଥା କିଛି ନ କହିବା ହିଁ ଭଲ । ଆଉ କିଛି ନ ହେଲେ ମଧ୍ୟ କହିଲା କଥାକୁ ବୁଝି ପାରିବେ ନାହିଁ । ବୁଝିଲେ ବି ଜାଣି ଶୁଣି ଓଲଟା ଅର୍ଥ କରି ପ୍ରଚାର କରିବେ । କବିତା କି ହେମ ଥିଲେ ସିନା···

ଉମା ବଡ଼ ଅସୁବିଧାରେ ପଡ଼ିଲା । ଯେତେ ଖୋଜିଲେ ବି ଗଡ଼ନାୟକ ଛଡ଼ା ତାକୁ ଆଉ କେହି ଦିଶିଲେ ନାହିଁ, ମନକଥା ଖୋଲି କହିବାକୁ, ଭଲ ମନ୍ଦ ପଚାରି

ବୁଝିବାକୁ! ପରଶେଷରେ ଅଜଣାରେ ତାର ଗୋଡ଼ ଦୁଇଟି ଲମ୍ବି ପଡ଼ଲା ଗଡ଼ନାୟକଙ୍କ ଘର ଆଡ଼କୁ ।

ମୁହଁ ହାତ ଧୋଇ ସେ ସଫା ଧଳା ସାଢ଼ୀ ଖଣ୍ଡିଏ ବାହାର କଲା । ସୁନା ରଙ୍ଗର ସରୁ ଡାଳ ପଡ଼ା କଳା ବ୍ଲାଉଜଟି ପିନ୍ଧିଲା । ଦର୍ପଣ ସାମନାରେ ଠିଆହୋଇ ଅନିଚ୍ଛାସତ୍ତ୍ୱେ ଟିକିଏ ହସି ପକେଇଲା । ମନ କନ୍ଦରରୁ ପ୍ରଶ୍ନ ଉଠିଲା, କାହାଁକି ସେ ଏମିତି ସଜେଇ ହେଉଛି ? ସେ ଆଉ କଣ କଲେଜକୁ ଯିବ ଯେ ଶହ ଶହ ଲାଳ ସରସର ହେବକଲା, ତରଳଲା ଆଖି ତାକୁ ଅନେଇ ରହିବେ, ସେ ହେବ ଶହେ ତରୁଣଙ୍କ ଆଲୋଚନାର କେନ୍ଦ୍ର ? ଆଉ କଣ ଏବେ ବାହା ହେବାକୁ ଯିବ ଯେ ପ୍ରଦର୍ଶନୀର କୋଣେଇ ପରି ନିଜକୁ ସଜେଇ ବଜାର ବଜାର ବୁଲେଇବ!

ନିଜ କଥା ନିଜେ ବୁଝି ପାରିଲା ନାହିଁ ।

କଂଗ୍ରେସ ଅଫିସର ଚପରାସୀ ନିମନ୍ତ୍ରଣ ପତ୍ରଟିଏ ଧରି ଆଗରେ ଠିଆହେଲା ।

'କଣ ?' ଉମା ପଚାରିଲା ।

'କେନ୍ଦ୍ର ଘରୋଇ ମନ୍ତ୍ରୀ ଆଜି ସନ୍ଧ୍ୟାରେ କଂଗ୍ରେସ ଅଫିସକୁ ଆସିବେ । ଟି ପାର୍ଟି ହେବ ।'

'ଯାଃ ସମୟ କଟାଇବା ପାଇଁ ଗୋଟାଏ ଆଶ୍ରୟ ମିଳିଗଲା । ହଉ, ଯିବାପାଇଁ ଚେଷ୍ଟା କରିବି ।'

ଉମା ତା ବୋଉଙ୍କ ଶୋଇବା ଘରକୁ ଗଲା ।

'ବୋଉ, ଆଜି ଟି ପାର୍ଟି ଅଛି । ରାତିକି ଟିକିଏ ଡେରିରେ ଆସିବି । ତୁ ଆଉ ଛୁଣ୍ଡାଇ ରାମ୍ପୁଡ଼ି ହେବୁନି ।'

'କି ଟି ପାର୍ଟି ?' ବୋଉ ସେମିତି ଶୋଇ ରହି ପଚାରିଲେ ।

'ବୁଝିଲୁ ବୋଉ, ଏମିତି ଗୁଡ଼ାଏ ଯା ଆସ ଧାଁଆ ଧପଡ଼ ଦ୍ୱାରା ଦେଶର କି ଉପକାର ହେଉଛି ମୁଁ କହି ପାରିବି ନାହିଁ । ହେଲେ ଏମିତି କାର୍ଯ୍ୟଗୁଡ଼ିକରେ ଯୋଗଦେବା ଦ୍ୱାରା 'ଦେଶ ସେବକ' ତାଲିକାରେ ନାଁ ଟା ଉଠି ଯାଉଛି । ଗୁରି ଜାଗାରେ, ପାଞ୍ଚ ଲୋକରେ ନାଁ ପଡ଼ୁଛି । ପ୍ରଚୁର ଗୃ ଜଳଖିଆ, ପାନ ସିଗ୍ରେଟ୍, ଖିଲି ଖିଲି ହସ କାହାକୁ ଭଲ ନ ଲାଗିବ କହିଲୁ ?'

'କଣ ଯେ ତୁ କହୁଛୁ, ତୋତେ ହିଁ ଜଣା । କଣ କରୁଚ କର୍ ।'

'ତୁ ତ ମୋ କଥା ଜମା ବୁଝି ପାରୁନୁ । ବୁଝିଲୁ ବୋଉ, ଦେଶ ଓ ଜାତିକୁ ନେତୃତ୍ୱ ଦେଉଛନ୍ତି ଯେଉଁମାନେ, ସେମାନଙ୍କୁ ସନ୍ଦେହ କରିବା ସାଧାରଣ ଲୋକ-ମାନଙ୍କର ଗୋଟାଏ ସ୍ୱଭାବ ସୁଲଭ ପ୍ରବୃତ୍ତି । ସେହିମାନଙ୍କ ଭିତରୁ ଅନେକଙ୍କ ଚାଲି ଚଳନ ଦେଖି ମୋତେ ବି ସନ୍ଦେହ ଲାଗୁଛି । ହେଲେ ଆଶ୍ୱାସନାର କଥା ଏତିକି ଯେ, ଆଜି ନୂତନ ଭାରତ ନିର୍ମାଣ କରିବା ଲାଗି ଯେଉଁ କର୍ମୀବୀରମାନେ ଅକ୍ଳାନ୍ତ ପରିଶ୍ରମ କରୁଛନ୍ତି, ସେମାନଙ୍କ ପଛରେ ଭଲ ହୁଅନ୍ତୁ କି ମନ୍ଦ ହୁଅନ୍ତୁ ଦଳେ ଲୋକ ଠିଆ ହୋଇଛନ୍ତି— ଶତ୍ରୁଙ୍କୁ ହଟାଇଦେବା ପାଇଁ, ପାଟି ଭୁଣ୍ଡ କରିବା ପାଇଁ, ଗୋଟାଏ ହଇଚଇ ଭିତରେ ପ୍ରାଣପାତ୍ କରି ଜାତିଯାକ ପ୍ରଗତିକୁ ଠେଲି ପେଲି ଉଠେଇ ନେବାପାଇଁ !'

ନିଜ ଝିଅ ପାଟିରୁ ଘଣ୍ଟା ଫୁଟିଲା ପରି କଥାଗୁଡ଼ାକ ଶୁଣି ଉମାର ବୋଉ ମନେ ମନେ ଖୁସି ହୋଇ ପଡୁଥିଲେ ବି ମନକଥା ମନରେ ରଖି ପଚାରିଲେ, 'ଏହା ରାମାୟଣର କଥା ନା ମହାଭାରତର ? କାହିଁ ମୋତେ ତ କେବେ ଶୁଣିଲା ପରି କି ପଢିଲା ପରି ଲାଗୁନାହିଁ ।'

ଉମା ସାମାନ୍ୟ ଚିଡ଼ିଲା ଭାବ ଦେଖାଇ କହିଲା, 'ତୁ ତ ମୋ ବୋଉ । ତୁ ଯଦି ମୋ କଥା ବୁଝିବୁ ନାହିଁ ଆଉ କିଏ ବୁଝିବ ? କାନ୍ଥ ବାଡ଼କୁ କହିବି ନା କଣ ?'

ଜନନୀ ହୃଦୟ ତରଳି ଗଲା । ଉମା ଆଡ଼କୁ ସ୍ନେହପୂର୍ଣ୍ଣ ନୟନରେ ଅନେଇ ସେ କହିଲେ, 'ହଉ, କହ । ଏଥର ନିଶ୍ଚୟ ବୁଝିବି ।'

'ବୁଝିଲୁ ବୋଉ, ହେଲେ ସବୁଠି ଯେମିତି ଗୋଟାଏ ଠେଲାପେଲା ଚାଲିଛି, କଂଗ୍ରେସ ଅଫିସରେ ବି ସେମିତି । ଚାରିଆଡ଼େ ଖାଲି ବିଷମ ଭୀଷଣ ପ୍ରତିଯୋଗିତା ହିଁ ଆଖିରେ ପଡୁଛି । ସମସ୍ତେ ଚାହୁଁଛନ୍ତି, ତାଙ୍କର ସାମ୍ନାରେ ଆଗେଇ ଯାଉଥିବା ଲୋକଟିକୁ ଠେଲିଦେଇ ସେ ନିଜେ ଉଠିଯିବେ ତା ଉପରକୁ । ଏ ସବୁ ଦେଖି ଦେଖି ବିନା ପରିଶ୍ରମରେ ବି କ୍ଳାନ୍ତ ଲାଗୁଛି ବୋଉ ।'

'ନିଶ୍ଚିନ୍ତରେ ଟିକିଏ ଶୋଇ ପଡ଼ିଲେ ହାଲିଆ ମରି ଯାଆନ୍ତା ନାହିଁ କି ?'

'ହଁ ବୋଉ । ଠିକ୍ କହୁଛୁ । ହଉ, ତୁ ହାଲିଆ ମାରୁ ଥା । ମୁଁ ଆଉ ଟିକିଏ ହାଲିଆ ହୋଇ ଫେରିବି ।'

'ବେଶି ରାତି କରିବୁନି ଝିଅ । ବାପା ଗୁଜୁରି ଗୁଜୁରି ହେବେ । ଏଣିକି ଏଣିକି ଲୋକେ ବି ଯାହା କହିଲେଣି ନା, ଆଉ ସହି ହେଉନାହିଁ । ବେଶି ସାବଧାନ ହେବୁ ।'

ଉମାର ମୁହଁ ଶୁଖିଗଲା । ଲୋକେ ପୁଣି କଣ ନୂଆ କଥା କହିବା ଆରମ୍ଭ କଲେଣି ? ଲୋକେ— ଯେଉଁମାନେ ସାଧାରଣ ଲୋକଙ୍କ ସରଳତାର ସୁଯୋଗ ନେଇ ବସି ବସି ଫାଇଦା ଉଠାଇବାକୁ ଚାହାଁନ୍ତି, ସେମାନେ ! ହେଉ···

ଉମା ଦାଣ୍ଡ ଅଗଣା ଡେଇଁ ଚାଲିଗଲା ବେଳକୁ ବଦ୍ରିରାଜ ବାବୁଙ୍କ ମୁହଁରେ ପଡ଼ିଗଲା । କେମିତି ଗୋଟାଏ ଆଶଙ୍କା ଓ ସଂକୋଚରେ ତାର ଦେହ ସାରା ଶୀତକଣ୍ଟା ମାରିଗଲା ।

'ପୁଣି କୁଆଡ଼େ ବାହାରିଲୁ ?' ପିଣ୍ଡା ଉପରେ ଥାଇ ବଦ୍ରିରାଜ ବାବୁ ପଚାରିଲେ । ଉମା ମୁଣ୍ଡପୋତି ଠିଆ ହୋଇ କହିଲା, କେନ୍ଦ୍ରମନ୍ତ୍ରୀ ଜଣେ ଅଫିସକୁ ଆସୁଛନ୍ତି । ଟି ପାର୍ଟି ଅଛି ।

'ଟି ପାର୍ଟି କରନ୍ତି, ମଦ ପିଅନ୍ତି, ଅଧରାତି ଯାଏ ପର ଝିଅ, ପର ବୋହୂମାନଙ୍କ ସହ ହେଁ ହେଁ ହେଉଥାନ୍ତି, ଏଇୟା ତ ସେ ବଡ଼ ଲୋକମାନଙ୍କର କାମ !' କହୁ କହୁ ବଦ୍ରିରାଜ ବାବୁଙ୍କ ମୁହଁ ଲାଲ୍ ହୋଇ ପଡ଼ିଲା ।

'ବାପା !' ଉମା ତଟସ୍ଥ ହେଲା ।

'ଜଣେ ଦି ଜଣ ନୁହଁନ୍ତି, ଅନେକ ଭଦ୍ରଲୋକ ବି ଏ କଥା କହୁଛନ୍ତି ।'

'ଏ ସବୁ ମିଛ କଥା ବାପା !'

'ଏ ପର୍ଯ୍ୟନ୍ତ ତାହାହିଁ ଭାବୁଥିଲି । କିନ୍ତୁ···'

'ବାପା !'

'ତୋ ବାଟ ତୋତେ ସଫା କରିବାକୁ ପଡ଼ିବ ।' ବଦ୍ରିରାଜ ବାବୁ ଧଡ଼୍ କିନା ବୈଠକଖାନାର କବାଟଟାକୁ ଟାଣିନେଇ ସେଠାରୁ ଚାଲିଗଲେ ।

ଗଡ଼ନାୟକ ଶୋଇ ପଡ଼ିଥିଲେ । ଦୁଆର ସେମିତି ମୁକୁଳା ରହିଥିଲା । ଗୃହକରଟି ହାଲିଆ ହୋଇ କେତେବେଳୁ ତଳ ଘରେ ଶୋଇ ପଡ଼ିଲାଣି ।

ଭିତରକୁ ପଶିବ କି ନାହିଁ ଭାବୁ ଭାବୁ ଉମା ଟେବୁଲ ପର୍ଯ୍ୟନ୍ତ ଚାଲିଯାଇ ଘରର ଆଡ଼କୁ ନଜର କରୁ କରୁ ତା ନାଁରେ ଲେଖା ହୋଇଥିବା ଚିଠି ଖଣ୍ଡିକ ଦେଖି ଚମକି ପଡ଼ିଲା । ଅଜଣା ଆଗ୍ରହ, ଆଶଙ୍କା ଓ ସନ୍ଦେହର ଗୋଳିଆ ଘଣ୍ଟା ଆକର୍ଷଣରେ ସେ ଖୋଲା ପଡ଼ିଥିବା ଚିଠିଟି ଉପରକୁ ଲୋଭ ଜର୍ଜର ଦୃଷ୍ଟି ନିକ୍ଷେପ କରିସାରି ଗଡ଼ନାୟକଙ୍କର ଶୋଇଲା ମୁହଁକୁ ଅନେଇ ରହିଲା । ପଦ୍ମ କଳିକା ପରି ଦୁଇଟି ବୁଜିଲା ଆଖି ଉପରେ ସେ ଦେଖିଲା ପରିବ୍ୟାପ୍ତ ନିରୁତା ମାନବିକତାର ମୁକୁଳା ତରଙ୍ଗ !

ଅଜଣା ପୁଲକରେ ତାର ତନୁ ମନ ଉଲ୍ଲସିତ ହୋଇ ଉଠିଲା । ସେ ଚିଠିଟିକୁ ପଢ଼ିବ କି ନାହିଁ ଭାବୁ ଭାବୁ ଗଡ଼ନାୟକ ବାବୁଙ୍କ ନିଦ ଭାଙ୍ଗି ଗଲା ।

'ଓଃ ତମେ ଆସିଛ ?'

'ଭୁଲ୍ କଲି ?'

'ଅନେକ ଡେରି କରିଦେଲି ।'

'ଏଁ ?'

ଗଡ଼ନାୟକ ଶେଜରୁ ଉଠି ମୁହଁ ଧୋଇଲେ । ଚଉକି ଟାଣି ଆଣି ବସି ପଡ଼ୁ ପଡ଼ୁ ଅନ୍ୟ ଚଉକିରେ ଉମାକୁ ବସିବାକୁ ଅନୁରୋଧ କରି କହିଲେ, ହଜାର ହଜାର ଲୋକଙ୍କ ସହିତ ମୋର ପରିଚୟ ଅଛି । ଭାରତର ବିଭିନ୍ନ କ୍ଷେତ୍ରରେ ମୋର ବିଭିନ୍ନ ସମ୍ପର୍କୀୟ ଶହ ଶହ ବନ୍ଧୁ ରହିଛନ୍ତି । କିନ୍ତୁ ସତ କହୁଛି ଉମା, ତୁମର ଉପସ୍ଥିତି ବ୍ୟତୀତ ଅନ୍ୟର ଉପସ୍ଥିତିରେ ମୁଁ ଆଦୌ ସନ୍ତୁଷ୍ଟ ହୋଇପାରୁ ନାହିଁ ।

'କାହିଁକି ?' ଉମା ରୁମାଲ କାନରେ ଓଠ ଚାପିଲା ।

'ମୋ ଜାଣିବାରେ, ଏହାର ବଡ଼ କାରଣ ହେଉଛି— ମୋ କଥାଗୁଡ଼ିକୁ ତମେ ଯେମିତି ଯଥାର୍ଥ ଭାବରେ ବୁଝି ପାରୁଚ ଅନ୍ୟ କେହି ବୁଝିପାରୁ ନାହାନ୍ତି । ବୁଝିଲେ ବି ଖୁବ୍ ଡେରିରେ ବୁଝୁଛନ୍ତି ।'

'ସତେ ?'

'ବିଶ୍ୱାସ କର ଉମା, କବିତା ଚାଲିଗଲା ପରେ ତୁମକୁ ଦେଖିଲାମାତ୍ରେ ମୋର ମନେ ହେଉଛି, ଜୀବନରେ ଯାହାକୁ ମୁଁ ଖୋଜି ହେଉଥିଲି, ତାକୁ ପାଇ ଯାଇଛି ।'

'ମୋତେ ?'

'ନା'

'ଆଉ ?'

'ତମର ଉପସ୍ଥିତିକୁ ।'

'ଆଚ୍ଛା, ଗୋଟିଏ କଥା ପଚାରିବି ? କିଛି ଭାବିବେ ନାହିଁ ?'

'ପଚାର ଉମା !'

'ଆପଣ କବିତା ନାନିର ଅଭାବ ଅନୁଭବ କରି ଭାଙ୍ଗି ପଡୁଛନ୍ତି କି ? ଅନ୍ୟ ଜଣକୁ ସାଥୀରୂପେ ଗ୍ରହଣ କରିବାକୁ ଇଚ୍ଛା କରୁଛନ୍ତି ? ଖୋଲି କହନ୍ତୁ । ବହୁ ସୁନ୍ଦରୀ, ବୁଦ୍ଧିମତୀ ତରୁଣୀଙ୍କ ସହ ମୁଁ ଆପଣଙ୍କର ପରିଚୟ କରାଇ ଦେବି । ସେମାନେ ବି ଚିର ଦିନ ଲାଗି ମୋ ନିକଟରେ କୃତଜ୍ଞ ହୋଇ ରହିବେ ଆପଣଙ୍କୁ ପାଇଲେ ।'

'ଉମା ! ଅଛା କରୁଚ ?'

ଉମା ଚୁପ୍ ରହିଲା ।

'ଆଜି ମୋତେ କଣ କଲେଜର ପଢ଼ାସାଥି କି କଂଗ୍ରେସ ଅଫିସର ଅଘୋରି ସହକର୍ମୀ ମନେ କରୁଚ ?' ଗଡ଼ନାୟକଙ୍କ ବିବେକ ଟିକିଏ ଉଗ୍ର ହୋଇ ପଡ଼ିଥିଲା ।

'ନା'

'ଆଉ ? ଶୁଣ ଉମା, ସବୁ ଦିନ ପାଇଁ ମୁଁ ତମକୁ ଗୋଟିଏ କଥା କହିଦିଏ । ବୋଧହୁଏ ତୁମପ୍ରତି ମୋର ଅସୀମ ଅନୁରକ୍ତି ଦେଖି ତମେ ଭ୍ରମରେ ପଡ଼ିଛ । ଭାବୁଚ, ମୁଁ ଜଣେ ତରୁଣୀ ସଙ୍ଗିନୀ ଭାବରେ ତୁମର ସାନିଧ୍ୟ ଚାହୁଁଛି । କିନ୍ତୁ ତା ଆଦୌ ଠିକ୍ ନୁହେଁ । ତମେ ତରୁଣୀ, ତମେ ସୁନ୍ଦରୀ— ଏହାହିଁ ମୋର

ଦୁର୍ଭାଗ୍ୟ । ତମେ ଯଦି ଗୋଟାଏ ଖଣ୍ଡିଆ ଧଡ଼ିଆ ବୁଢ଼ା ହୋଇଥାନ୍ତ, ତେବେ ବି ମୁଁ ତୁମର ସାନିଧ ପାଇଁ ଲାଳାଇତ ହୋଇଥାନ୍ତି ।'

ଉମା ଆଁ କରି ଏକ ଲୟରେ ଅନେଇ ରହିଲା ଗଡ଼ନାୟକଙ୍କ ମୁହଁକୁ । ସେ ପୁଣି କହିଲେ, ଶୁଣିବ ? ଶୁଣିବ ମୋ ମନ କଥା ? ମୁଁ ଭୁଲ୍‌ରେ ବି କେବେ ଇଚ୍ଛା କରିନାହିଁ, ସୃଷ୍ଟି-ଧର୍ମ ରକ୍ଷା କରି ଆଉ ଏକ କ୍ଷୁଦ୍ରତମ ସଂସାର ଭିତରେ ପୁଣି ଥରେ ଆବଦ୍ଧ ହୋଇ ପଡ଼ିବି । ମୋର ଇଚ୍ଛା, ଏଥର ମୁଁ ବିଶ୍ୱବ୍ୟାପ୍ତ ଅନନ୍ତ ଅଖଣ୍ଡ ମହାସତ୍ତ୍ୱର ଅଦୃଶ୍ୟ ସ୍ରୋତରେ ନିଜକୁ ମିଳାଇ ଦେବି । ଏଥିପାଇଁ ସାଧନା କରିବାକୁ ଅବଲମ୍ବନ ଦରକାର, ଯୋଗ୍ୟ ସାହଚର୍ଯ୍ୟ ଦରକାର, ସମ ଶକ୍ତିର ସହୃଦୟ ସାନିଧ ଦରକାର; ଘର ସଂସାର ପାଇଁ ନୁହେଁ । ଏଥିପାଇଁ ତୁମର କେଉଁ ସୁନ୍ଦରୀ ତରୁଣୀ ରାଜି ହେବ ? ସକ୍ଷମ ହେବ ?

ବିବାହ ଅନୁଷ୍ଠାନ ଦ୍ୱାରା ଏକ ସାମାଜିକ-ଦଲିଲ୍‌ରେ ପ୍ରକାଶ୍ୟଭାବେ ଦସ୍ତଖତ ଦେଇ କାହାର ଆଜ୍ଞାବହ ହୋଇ ରହିବା ମୋ ପକ୍ଷେ ଆଉ ସମ୍ଭବ ନୁହେଁ କି ମଙ୍ଗଳପ୍ରଦ ବି ନୁହେଁ । ଝିଅ, ଜୁଆଁଇ, ପୁଅ, ପତ୍ନୀଙ୍କର ଭଲ ମନ୍ଦ, ତାଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ବୁଝି ବୁଝି ବୟସ ଓ ଆୟୁଷକୁ ଆହୂତି ଦେବା ଏକ ସାମାଜିକ ଧର୍ମ ହୋଇପାରେ । କିନ୍ତୁ ସାମାଜିକ ସୁଖ ସୁବିଧାର ଆହୁରି ଉପରେ, ସାଧାରଣ ଲୋକଙ୍କ ଆଖି, ହାତ ନ ପାଇବା ଥାନରେ ମୁଁ ଦେଖେ ଏକ ସର୍ବବ୍ୟାପକ ଚିର ଉଜ୍ଜ୍ୱଳ ଆନନ୍ଦ ! ସେ ଅମ୍ଳାନ ଆନନ୍ଦ ପତ୍ନୀ ତୁଲେ ସିନେମା ଯିବାରେ କି ପୁତ୍ର ତୁଲେ ଗେଲ ହେବାରେ ମିଳିବାର ନୁହେଁ । ପତ୍ନୀଙ୍କର ମନମୁତାବକ ସାଡ଼ୀ ବାଛି ବାଛି, କୋଠା ତୋଳି ତୋଳି, ମଟରଗାଡ଼ି ମରାମତି କରାଉ କରାଉ ମୁଁ ଆଉ ମଣିଷ ଜନମର ସକଳ ଶକ୍ତି ନିଃଶେଷ କରିଦେଇ ପାରିବି ନାହିଁ । ଶକ୍ତିର ଅନ୍ୟ ବିନିଯୋଗ, ଯଥାର୍ଥ ବିନିଯୋଗ ମୁଁ ଚାହେଁ ।

ମଉକା ମିଳିଛି । ପୃଥିବୀର ପାପଶକ୍ତି ଆଜି ଆତ୍ମପ୍ରକାଶ କରି ରଣକ୍ଷେତ୍ରରେ ପ୍ରତ୍ୟକ୍ଷ ଉଭା ହୋଇଛି । ଚୀନ୍ ଦେଶରେ, ପାକିସ୍ଥାନ ସୀମାରେ ପାପଶକ୍ତି ମାଡ଼ି ଉଠିଛି । ଗାଁ ଗାଁରେ, ସାହି ସାହିରେ ଅନିଷ୍ଟକାରୀମାନେ ଜାଗି ଉଠିଛନ୍ତି । ଏତିକି ବେଳେ ଆମେ ଆମର ମଣିଷ ପଣିଆ ନେଇ, ପୁଣ୍ୟ କାମନା ନେଇ ଆକ୍ରମଣର ସମ୍ମୁଖୀନ ହେବାକୁ ହେବ । ସେଥିପାଇଁ ଭାରତର ପ୍ରତ୍ୟେକ ନର ନାରୀଙ୍କୁ ଜାଗ୍ରତ ଓ ସଂଗଠିତ କରାଇବା ଉଦ୍ଦେଶ୍ୟରେ କର୍ତ୍ତବ୍ୟ କରିବାକୁ ତୁମକୁ ମୁଁ ଆଗ୍ରହୀ କରାଇଛି । କବିତାକୁ ଅନୁମତି ଦେଇଛି । ନିଜେ ବି ପ୍ରସ୍ତୁତ ହେଉଛି ।

ଟିକଏ ନୀରବ ରହି ଗଡ଼ନାୟକ ପୁଣି ହସି ହସି କହିଲେ, 'ତମର ପିଲାଳିଆମି ଆହୁରି ଯାଇ ନାହିଁ ଉମା ? ମୋ ଜୀବନର ସାଥୀ ଜୁଟେଇ ଦେବ ତୁମେ ? କି ସାଥୀ ? କହତ ଉମା, ଜଣକର ପାଦରେ କଣ୍ଟାଟିଏ ଗଳିଗଲେ ଯଦି ଅନ୍ୟର ଅଙ୍ଗରେ ପୀଡ଼ା ଅନୁଭୂତ ନ ହେବ, ସେ ସହଯାତ୍ରୀର ସହାବସ୍ଥାନର ଆଉ କି ମୂଲ୍ୟ ଆଶା କରାଯିବ ? ବେଶ୍ୟା ବୃତ୍ତି ଓ ଉଚ୍ଛୃଙ୍ଖଳ ବ୍ୟଭିଚାରଜନିତ ଲଜ୍ଜ୍ୟାକର ଦୁର୍ନାମରୁ ଆପଣା ସାମାଜିକ ପ୍ରତିଷ୍ଠାକୁ ବଞ୍ଚେଇବା ପାଇଁ ବିବାହ-ବନ୍ଧନ ଦ୍ୱାରା ଦୁଇଟି ଜୀବନର ଏକତ୍ର ଅବସ୍ଥାନ ଅତ୍ୟନ୍ତ ନିରାପଦ, ଏକ ପବିତ୍ର କାର୍ଯ୍ୟ ମଧ୍ୟ । କିନ୍ତୁ ମହାନ୍ ବିଶ୍ୱ-ସତ୍ତାର ସର୍ବତ୍ର ପ୍ରବାହିତ ଧାରଣା ମଧ୍ୟରେ ଆତ୍ମାର ସକଳ ସୂକ୍ଷ୍ମାନୁଭୂତିକୁ ଲୀନ କରାଇ ଦେଇ ଏକ ଅଚିନ୍ତ୍ୟମୟ ପରମାନନ୍ଦ ଲାଭ କରିବା ଯେଉଁ ଜୀବନର ଲକ୍ଷ୍ୟ, ସେ ଜୀବନରେ ଏ ବିବାହ, ଏ ବନ୍ଧନ, ଏ ମିଳନ ଅନ୍ୟ ଏକ ପ୍ରତିବନ୍ଧକ ଛଡ଼ା ଆଉ କଣ ହୋଇପାରେ ? ବୁଝି ପାରୁଚ ତ ?'

ଉମା ଦର୍ଶନ ଶ୍ରେଣୀର ନିର୍ବିକାର ଛାତ୍ରୀଟିଏ ଭଳି ଚୁପ୍‌ଚାପ୍ ବସି ଶୁଣୁଥିଲା । ଗଡ଼ନାୟକଙ୍କ ମୁହଁରୁ ପଦେ କଥା ଶହେ ପଦ ପରି ତାକୁ ଶୁଭୁଥିଲା । ବେଳୁ ବେଳ ତା ମନଟା ଉଦାର ହୋଇ ଉଠୁଥିଲା । ବେଳକୁ ବେଳ ମସ୍ତିଷ୍କର, ହୃଦୟର କୋଣ ଅନୁକୋଣ ସବୁ ପରିଷ୍କାର ହୋଇ ଯାଉଥିଲା । ତା ମନର ସମସ୍ତ ପ୍ରଶ୍ନ, ସମସ୍ତ ଅଭିଯୋଗ ଆପଣା ଛାଏଁ ପାଣି ଫାଟି ତରଳି ଗଲା । ତାଙ୍କ କଥା ଶୁଣିବାରେ ଉମାର ଉତ୍ସାହ ଦେଖି ଗଡ଼ନାୟକ ଟିକଏ ତୁନି ହୋଇ ପୁଣି କହିବାକୁ ଲାଗିଲେ— ମଣିଷ ଜନମ ପରି ଜନମ ଆଉ କିଛି ନାହିଁ ଉମା । ସଚ୍ଚିଦାନନ୍ଦ ପରଂବ୍ରହ୍ମ ପରମାନନ୍ଦ ଲାଭପାଇଁ ମଣିଷ ମନ, ମଣିଷ ଜନମହିଁ ପ୍ରଶସ୍ତ । ତେଣୁ ଏ ଜନମର ଯଥାର୍ଥ ସୁଯୋଗ ଆମକୁ ନେବାକୁ ହେବ ।

ଘୃଣା ଈର୍ଷା ଦ୍ୱେଷ ହିଂସା ଗର୍ବ ଅହଂକାର କାମ କ୍ରୋଧ ପ୍ରଭୃତି ରାକ୍ଷସ ପ୍ରବୃତ୍ତିଗୁଡ଼ିକ ସାଧାରଣ ଅବସ୍ଥାରେ ମୋହିତ କରି ପକାଏ ବୋଲି ମଣିଷ ସହଜରେ ବାଟ ହୁଡ଼ିଯାଏ । କଂଗ୍ରେସ ଅନୁଷ୍ଠାନର ମହାନ୍ ଲକ୍ଷ୍ୟ ଗ୍ରହଣ କରି ମଧ୍ୟ ବେ-କଂଗ୍ରେସିଆ ଆଚରଣ ଦ୍ୱାରା ନେତାମାନେ ଶାସନ ଓ ସମାଜକୁ ନୀତିଭ୍ରଷ୍ଟ କରାନ୍ତି । ରାଜନୈତିକ କର୍ମୀ ବିଭ୍ରାଟ ସୃଷ୍ଟି କରନ୍ତି । ଅଧ୍ୟାପକ ଜ୍ଞାନମାର୍ଗ ବତେଇବାକୁ ଯାଇ ଛାତ୍ରୀର ପ୍ରେମରେ ପଡ଼ନ୍ତି । ବ୍ୟବସାୟୀ ଡକେଇତ ହୁଅନ୍ତି । ସୁନ୍ଦର ସଂସାର କଦାକାର ଦିଶେ ।

ଚୀନ୍ ଦେଶର ସବୁ ଲୋକ ଆତତାୟୀ ନୁହଁନ୍ତି । ସେମାନଙ୍କୁ ବିପଥଗାମୀ କରାଉଛନ୍ତି କେବଳ ସେ ଦେଶର ଉଦ୍ଭ୍ରାନ୍ତ ଶାସକମାନେ । ଆକ୍ରମଣକାରୀ ଚୀନ୍ ଲୋକେ ହୁଅନ୍ତୁ କି ଭାରତର ପଥଭ୍ରଷ୍ଟ ଦଗାଦାର ଲୋକମାନେ ହୁଅନ୍ତୁ, ଏ ସମସ୍ତେ ସେହି ରାକ୍ଷସ ପ୍ରବୃତ୍ତିର ଶୀକାର ହୋଇଛନ୍ତି । ଏମାନଙ୍କ କାର୍ଯ୍ୟ ପୃଥିବୀ ପକ୍ଷରେ ଦୁଃଖଦାୟକ ହୋଇଛି । କିନ୍ତୁ ଉମା, ତମର ପ୍ରକୃତ ପରିଚୟ ଲାଭ ପରେ ମୋର ମନେ ହେଉଛି, ଏ ସମସ୍ତ ମାର୍ଜନୀୟ, ପରିବର୍ତ୍ତନୀୟ ! ଏହି ପଥଭ୍ରଷ୍ଟ ନର ନାରୀମାନେ ଦୟାର ପାତ୍ର, ଏମାନେ କେବଳ ଅଜ୍ଞ ବାତୁଳ ପରି । ସମସ୍ତେ ସଂଶୋଧନ ଯୋଗ୍ୟ !

ଆଜ ବେଳ ନିକଟ ହୋଇଛି ଉମା, ସମଗ୍ର ମଣିଷ ସମାଜକୁ ସଂଶୋଧନ କରିବାକୁ କେଇଜଣ ମାତ୍ର କଠୋର ସାଧନା କଲେ ମଧ୍ୟ ସେ କାର୍ଯ୍ୟ ଶୀଘ୍ର ସମ୍ପୂର୍ଣ୍ଣ ହେବ । କିନ୍ତୁ ସେଥିପାଇଁ ଲୋଡ଼ା ଅସୀମ ଧୈର୍ଯ୍ୟ, ଅଦମ୍ୟ ସାହସ ଓ ଉତ୍ସାହ । ଆଶା କରୁଛି, ତମ ଭଳି ଲୋକ ଏ ଦିଗରେ ସଫଳତାର ସହ ଅଗ୍ରସର ହୋଇ ପାରିବେ ।

'ମୁଁ ?' ଉମା ମିଟି ମିଟି କରି ଅନେଇଲା ଗଡ଼ନାୟକଙ୍କର ଅପୂର୍ବ ଉତ୍ସାହ-ଉଦ୍ଭାସିତ ଉଚ୍ଚ କପାଳକୁ । ତରବର ହୋଇ ଏକା ନିଶ୍ୱାସରେ କହିଲା, ନା ନା । ଏଡ଼େ ବଡ଼ କଥା ମୋ ଦ୍ୱାରା ହୋଇ ପାରିବ ନାହିଁ, ମୋତେ ଆପଣ ମୋଟେ ଜାଣନ୍ତି ନାହିଁ । ମୁଁ ନିତାନ୍ତ ଅସମର୍ଥ । ଅକ୍ଷମ । ମୋ ଦ୍ୱାରା କିଛି ହୋଇପାରିବ ନାହିଁ ।

ଗଡ଼ନାୟକ ହସିଲେ । କହିଲେ, ଯାହାଦ୍ୱାରା ଜଗତ ଓ ମଣିଷ ସମାଜ ପାଇଁ କିଛି କରିବା ହୋଇ ପାରେନା, ସେମାନେ ଢେର ଆଗରୁ ଘର କୁଟୁମ୍ବ କାର୍ଯ୍ୟରେ ସମସ୍ତ ଜୀବନଟାକୁ ବୁଡ଼ାଇ ପକାନ୍ତି । ନିଜକୁ ଏମିତି ଏକୁଟିଆ କରି ରଖିପାରନ୍ତି ନାହିଁ । ତମ ଦ୍ୱାରା ଯଦି ମଣିଷ ସମାଜର କିଛି ଉପକାର ହେବାର ନଥାନ୍ତା, ଅନେକ ଦିନୁ ତୁମର ବିବାହ ହୋଇ ସାରନ୍ତାଣି । ଝିଅର ସିଂଘାଣି, ପୁଅର ହଗା, ବାନ୍ତି ସଫା କରୁ କରୁ ଆଜ ତମର ବେଳ ଅଣ୍ଟୁ ନଥାନ୍ତା !

ଉମା ଲାଜରେ ସଢ଼ିଗଲା ।

'ହେଉ... ଆପଣ ଭାରି ଇଚ୍ଛେ । ଆପଣ ଥାଆନ୍ତୁ । ବୋଉ ପୁଣି ଗୁରୁମୁରୁ ହେଉଥିବ । ମୁଁ ଯାଉଛି ।'

'ଆଉ ଆସିବ ନାହିଁ ମୋ ପାଖକୁ ? ହିଁ ଚିଠିଟିଏ ଲେଖିଥିଲି । ଆସିଚ ତ ନେଇଯାଅ ।'

ଗଡ଼ନାୟକ ଚିଠିଟିକୁ ଟେବୁଲ ଉପରୁ ଉଠାଇ ଆଣି ବଢ଼ାଇଲେ ।

'ନା ଥାଉ । ମୋର ଆଉ କିଛି ପ୍ରୟୋଜନ ନାହିଁ ।'

'ଆଚ୍ଛା, ହେଉ । ତେବେ ଆଉଥରେ ଦେଖା ହେବ ତ ? ଯଦି ଦେଖା ନ ହେବ, ଏ ଚିଠିଟି ପଠାଇ ଦେବି ।'

ପୂର୍ଣ୍ଣିମା ଆକାଶରେ ପୁଣି କଳା ମେଘ ଗୁଡ଼ିଇ ହୋଇ ପଡ଼ିଲା । ଉମା ମୁହଁ ଶୁଖେଇ କହିଲା, 'ଜୟପୁରରେ ଥିଲି ଯାଏ ଆମର ଆଉ ଦେଖା ନ ହେବାହିଁ ଭଲ ।'

'କାହିଁକି ?'

'ସାମାଜିକ ଜୀବନର ଅକାରଣ ଶତ୍ରୁ ଏଠି ପ୍ରବଳ ହୋଇ ଉଠିଛନ୍ତି । ନାନା ବାଜେ ଗୁଜବ୍ ସୃଷ୍ଟି କରି ଆମର ପ୍ରତ୍ୟେକ ଗତି ଚଳନକୁ ଭିନ୍ନ ଭାବରେ ଚିତ୍ରଣ କରୁଛନ୍ତି ।'

'ଏପରି ଲୋକ ସମାଜର ସବୁ ଅଗଣାରେ ଅଛନ୍ତି ଉମା ! ସେମାନେ ସେମିତି ହେଉଥିବେ । ତାରି ଭିତରେ ଆମକୁ ସାଧନା କରିବାକୁ ପଡ଼ିବ । ଚିନ୍ତା କରନାହିଁ, କିଛି ଦିନ ପରେ ଏଇମାନେ ହିଁ ଫୁଲ ଚନ୍ଦନ ଧରି ପୂଜା କରିବାକୁ ଆସିବେ । ତୁମର ପ୍ରଶଂସାର ଡିଣ୍ଡିମ ପିଟି, ତୁମରି ନାଁରେ ସରଳ ନର ନାରୀଙ୍କ ଠାରୁ ଫାଇଦା ଉଠାଇବେ । ସେମାନଙ୍କୁ ଡରିବା ଅନାବଶ୍ୟକ ।'

'ତଥାପି...'

'ହେଉ, ଯାହା ଉଚିତ ମଣୁଚ, କର ।'

'ମୁଁ ଆଉ କିଛି କରିବି ନାହିଁ । ମୋର ସବୁ ଶକ୍ତି ସରି ଯାଇଛି ।'

'ଭୁଲ୍ କହୁଛ । ଅନେକ କାମ କରିବାର ଅଛି । ତମର ଶକ୍ତି ଅସରନ୍ତି ।'

'ଆଉ କଣ ମୁଁ କରିବି ?'

'ମଞ୍ଜୁମାଳା ପରି, ପ୍ରିୟରଞ୍ଜନ ପରି ବହୁ ବ୍ୟକ୍ତିଙ୍କ ଜୀବନଯାପନ ଧାରାକୁ ସଲଖେଇ ସୁନ୍ଦର କରି ଗଢ଼ିବାକୁ ଉଦ୍ୟମ କରିବ ।'

'ସେ କାମ କଣ ମୋ ଦ୍ୱାରା ସମ୍ଭବ ?'

'ସେତିକ ଯଦି ତମଦ୍ୱାରା ସମ୍ଭବ ନ ହେବ, ଆମେ ଆମର ମାତୃଶକ୍ତିକୁ ନେଇ ଆଉ ଗର୍ବ କରୁଥିବୁ କାହିଁକି ? ଆଉ କଣ ଯେମିତି ମୁଁ ଲୋକଙ୍କ ହିତପାଇଁ କାମ କରୁଚି ବୋଲି ଆତ୍ମସନ୍ତୋଷ ଲାଭ କରୁଥିବ ? କୁହ ।'

'ସେମାନେ ତ ଆମର ମୁହଁ ଚାହିଁ ନାହାନ୍ତି । ଆମର ଗୁଣ ମାଡ଼ୁ ନାହାନ୍ତି । ଆମ କଥାକୁ କାନ ଦେବେ କି ?'

'ମଣିଷର ହୃଦୟକୁ, ଚିନ୍ତା ଧାରାକୁ ତମେ ଯଦି ପ୍ରଭାବିତ କରି ନ ପାରିବ, ଆଉ କଣ କରି ଦେଶକୁ ଦୃଢ଼ କରିବ, ଜାତିକୁ ନିର୍ମାଣ କରିବ ? ଚେଷ୍ଟା କଲେ ସବୁ କଥା ହେବ ଉମା । ଧୈର୍ଯ୍ୟର ସହି ଆଗେଇ ଚାଲ । ଅଧ ବାଟରୁ ଫେରି ପଡ଼ିଲେ ସାଧନା ଅସମ୍ପୂର୍ଣ୍ଣ ହୋଇ ରହିଯିବ । ଜୀବନ ପଛକୁ ହଟି ପଡ଼ିବ ।'

'ବାପା ବୋଉ ବନ୍ଧୁ ବାନ୍ଧବ ସମସ୍ତେ ସନ୍ଦେହ କଲେଣି । ତାରି ଭିତରେ ମୁଁ ଯେ କେମିତି ଏ ସବୁ କାମ କରିବି ବୁଝିପାରୁ ନାହିଁ ।'

'ଚେଷ୍ଟା କରି ଦେଖ । ମନକୁ ପଛେଇବାକୁ ଦିଅନାହିଁ । ଆଉ ଟିକିଏ ସମ୍ଭାଳି ଯାଅ । ସମସ୍ତେ ନିଜ ନିଜର ଭୁଲ୍ ବୁଝିପିବେ, ସେ ବେଳ ନିଶ୍ଚୟ ଆସିବ ।'

'ଆପଣ ଭାରି ଆଶାବାଦୀ ।'

'ଅନ୍ଧାର ଅତିକ୍ରମ କରି ଆଲୋକ ପାଖରେ ପହଞ୍ଚିବା ଯାଏ ଅନାଶକ୍ତଭାବେ ଅଶାବାଦୀ ନ ହେଲେ ଚାଲିହେବ ନାହିଁ ଉମା ।'

'ଅନ୍ଧାର ହୋଇ ଗଲାଣି । ମେଘ ଉଠେଇଲାଣି । ବୋଉ ବାଟ ଚାହିଁଥିବ । ଯିବି—'

'ଯାଅ ଉମା, ତୁମେ ଆହୁରି ଦୃଢ଼ ହୁଅ ।'

ବିନ୍ଧ୍ୟରାଜ ବାବୁ ପତ୍ନୀଙ୍କ ସହିତ କଜିଆ ନ କରିବାକୁ ସର୍ବଦା ଚେଷ୍ଟା କରିଥାନ୍ତି । ତଥାପି ଆଜି ଝିଅର ଚାଲି ଚଳନ ବିଷୟରେ କଥାବାର୍ତ୍ତା ହେଉ ହେଉ ଉମା ବୋଉଙ୍କ ସହିତ ତାଙ୍କର ଟିକିଏ ଝଗଡ଼ା ହୋଇଗଲା । ମନକୁ କାଟିବାରୁ ଫଣଫଣ ହୋଇ ସେ ଦାଣ୍ଡ ଆଡ଼କୁ ଚାଲିଗଲେ ।

ଏତେବେଳ ଯାଏ ଉମା ଘରକୁ ଫେରୁ ନଥିବା ଦେଖି ବୋଉଙ୍କ ମନ ଅଧିକ ଛଟପଟ ହେଲା । ଯେତେ ପାରିବାର ହେଉପଛେ ସେ ଝିଅ, ଗୁଡ଼ାଏ ରାତିଯାଏ ବାହାରେ ରହିବା କଏ ସହିବ ? ମରଦଙ୍କ ପରି ଯୁଆଡ଼େ ଇଚ୍ଛା ସିଆଡ଼େ ଏକୁଟିଆ ଯାଉଛି, କେତେବେଳେ ଫେରୁଛି, କଣ ଖାଉଛି ପିଉଛି କିଛି ଠିକଣା ନାହିଁ । ସେ ଯଦି ସବୁ ଦିନ ଏମିତି ହୁଏ, ତାକୁ ନେଇ ଏ ସମାଜରେ ଚଳିବେ କେମିତି ?

ଝିଅର ଚାଲି ଚଳନ ସମ୍ପର୍କରେ ମୁଣ୍ଡ ଟାଣିକେଇ ଚିନ୍ତା କରୁ କରୁ ଉମା ବୋଉ ଗାଲରେ ହାତଦେଲେ । ଦାଣ୍ଡ ଦୁଆର ଆଡ଼କୁ ଅନେଇ ଅନେଇ ପିଣ୍ଡା ଖମ୍ବକୁ ଆଉଜି ଠିଆହୋଇ ରହିଲେ । ସଡ଼କ ସେ ପାଖରେ ମ୍ୟୁନିସିପାଲିଟିର ଭଙ୍ଗା ପାଇଖାନାର ଆଡୁଖା-କାନ୍ଥଟି ତାଙ୍କୁ ଖତେଇ ହେଲା ପରି ଛିଡ଼ା ହୋଇଥିଲା । ଗୋଟିଏ ଧଳା ଘୁଷୁରି ସେଠି ଓଳଆ ଗଦା ଶୁଙ୍ଘି ଶୁଙ୍ଘି ଏ ପଟ ସେ ପଟ ହେଉଥିଲା । ଟିକିଏ ପରେ ପରେ ଗଧ ଖେଁ ଖେଁ ହୋଇ ଗଳି ଭିତରକୁ ଚାଲିଗଲେ ।

ଉମା ବୋଉଙ୍କ ମନରେ ଉକୁଟି ଉଠିଲା ଭାବନା— ତା ସାଙ୍ଗର ଝିଅ ଜାନକୀ— ଏକା ସାଙ୍ଗରେ ପାଠ ପଢ଼ୁଥିଲେ; ଆଜି ସେ ଦୁଇଟି ପିଲାର ମା । କେତେ ସୁନ୍ଦର ଘର ଦୁଆର କରି ସୁଖରେ ରହୁଛି । ଉମା ଯଦି··· ତା ବାପା ଏମିତି ଫଣଫଣ ହୁଅନ୍ତେ ନା ମୁହଁ ମୋଡ଼ନ୍ତେ ? ଆଜି କେତେ ଅଚିନ୍ତାରେ, କେତେ ଆନନ୍ଦରେ ସେ କାଳ କାଟୁଥାନ୍ତା । ଆଖି କୋଣରେ ଲୁହ ଜକେଇ ଆସିଲା । ସେ ଉଦ୍‌ଗ୍ରୀବ ହୋଇ କଂଗ୍ରେସ ଅଫିସ ଆଡୁ ମାଡ଼ି ଆସିଥିବା ସଡ଼କର ମୋଡ଼ ଉପରକୁ ଚାହିଁ ରହିଲେ ।

ଠଣ୍ ଠଣ୍ ଠଣ୍··· ଠଣ୍ ଠଣ୍···

ଖୁବ୍ ଜୋର୍‌ରେ ଛୁଟି ଆସୁଥିଲା ରିକ୍‌ସାଟିଏ । ଉମା ବୋଉଙ୍କ ହୃଦୟରେ ଆଶ୍ୱାସନାର ଢେଉ ଉଛୁଳି ପଡ଼ିଲା । ହୁଏତ ଉମା ହସ ହସ ମୁହଁରେ ରିକ୍‌ସାରୁ ଓହ୍ଲାଇ ଆସୁ ଆସୁ ତାଙ୍କ ଗଳାରେ ଗ୍ରାଡି ଲଗାଇ ପିଲାଙ୍କ ପରି ଅଝଟ ସ୍ୱରରେ କହିବ, 'ବୋଉ, କାହିଁ ତୁ କେମିତି ଆଦର କରି ଚୁମା ଦେଉ ଦେଖିବା'—ଉମା ବୋଉ ଆଶା କରିଥିଲେ । କିନ୍ତୁ ରିକ୍‌ସାଟି ଡାହାଣ ରାସ୍ତାରେ ଆଖି ପିଛୁଳାକେ ଅଦୃଶ୍ୟ ହୋଇଗଲା । ସେ ହତାଶ୍ ହୋଇ ଆକାଶକୁ ଅନେଇ ରହିଲେ । ହେଲେ ମେଘ ଉଠେଇଲାଣି କି କଣ । ତାରାମାନେ ଦିଶୁ ନାହାନ୍ତି । ଜହ୍ନ ଆଲୁଅ କେତେ ଝାପ୍‌ସା ଦିଶିଲାଣି ।

ଆହୁରି ପ୍ରାୟ ପନ୍ଦର ମିନିଟ୍ ପରେ ସେହିଆଡୁ ଆଉ ଗୋଟିଏ ରିକ୍ସା ଆସୁଥିବାର ଦେଖାଗଲା । ଥରେ ଧକ୍କା ପାଇଛନ୍ତି ବୋଲି ସେ ଆଉ ସେତେ ଉଦ୍‌ବିଗ୍ନ ହେଲେ ନାହିଁ । ଆଉ ଟିକିଏ ମୁଣ୍ଡ ଉପରକୁ ଓଢ଼ଣା ଟାଣିଆଣି ଛିଡ଼ାହୋଇ ରହିଲେ । ଏଥର ରିକ୍‌ସାଟି ରହିଲା । ଉମା ଧୀରେ ଧୀରେ ଓଲ୍ହାଇ ଆସି ତଳେ ଠିଆହେଲା । ମୁନିସିପାଲିଟି ବତ୍ତି ଖୁଣ୍ଟର ମିଟି ମିଟି ଆଲୁଅ ସାଙ୍ଗରେ ମେଘ-କବଳିତ ଝାପ୍‌ସା ଜହ୍ନର ମିଶାମିଶି ତେଜରେ ଉମାର ଚିନ୍ତିତ ମୁଖମଣ୍ଡଳ ତାଙ୍କ ଆଖିରେ ପଡ଼ିଗଲା । ଉମା ସାମାନ୍ୟ ଟଳିଲା ଟଳିଲା ଗତିରେ ତାଙ୍କ ଆଡ଼କୁ ଅଗ୍ରସର ହେଲା ।

ଅଜଣା ଆଶଙ୍କାରେ ବୋଉଙ୍କର ଛାତି ଥରି ଉଠିଲା । ଆଖି କୋଣର ଉଚ୍ଛୁଳା ଲୁହ ଶୁଖିଗଲା ।

'ବୋଉ !' ଉମାର କଣ୍ଠରେ କୋଟିଏ କରୁଣ ରାଗିଣୀର ସରଳ ମୂର୍ଚ୍ଛନା ପ୍ରତିଧ୍ୱନିତ ହେଉଥିଲା ପରି ଲାଗିଲା ।

'ଆ··· ଏତେ ଡେରି କଣ କଲୁ ମା ?'

ଜନନୀ ମନରୁ ସକଳ ଅଭିଯୋଗ, ସକଳ ରାଗ ଅଭିମାନର ଚେରମୂଳ କର୍ପୂର ରେଣୁ ପରି ପବନରେ ମିଳେଇ ଗଲା । ଉମା ଅପରାଧିମାଙ୍କ ପରି ତଳ ପାହାଚରେ ଠିଆହୋଇ କହିଲା, ମୁଁ କଂଗ୍ରେସ ଅଫିସକୁ ଯାଇନାହିଁ ବୋଉ । ଆଉ ଯିବି ନାହିଁ ବୋଲି କହିବାକୁ ଯାଇଥିଲି, ଗଡ଼ନାୟକ ବାବୁଙ୍କ ନିକଟକୁ ।

ଲୁହଭିଜା ହୃଦୟର କରୁଣ ବୈରାଗ୍ୟ ଝରି ପଡୁଥିଲା ଉମାର କଥାରୁ । ଗେଲ୍ହା ଝିଅର ଶୁଖିଲା ମୁହଁରୁ ତାର ଛଟପଟ ମନର ଗୁମ୍ଫିଁ ଗୁମ୍ଫିଁଆ ବେଦନା ଅନୁମାନ କରି ଗର୍ଭଧାରିଣୀ ବୋଉଙ୍କର ବୁକୁ ବିଦାରି ହୋଇଗଲା ପରି ଲାଗିଲା । ସେ ଆଉ କିଛି ପଚାରି ପାରିଲେ ନାହିଁ । ଅନନ୍ତ ଅଭୟର ଅମୃତ ଝରାଇ ଅନେଇ ରହିଲେ ପ୍ରାଣପ୍ରିୟ କନ୍ୟାର ଉଦାସ ମୁହଁକୁ ।

ଉମା ଡରି ମରି କହିଲା, ଚାଲ୍ ବୋଉ ! ଡେରି ହୋଇଗଲା ବୋଲି ତୁ ରାଗିଛୁ ?

'ତାଙ୍କ ପାଖରେ କାହିଁକି ଏତେ ରାତିଯାଏ ରହିଗଲୁ ? ତୁ ମୋତେ ଏମିତି ବଇରୀ ମୁହଁରେ ଭଗାରିହସା କରୁଚୁ କାହିଁକି କହିଲୁ ?'

ତା ବୋଉ ମୁହଁରୁ ହଠାତ୍ ଏପରି ମନ୍ତବ୍ୟ ଶୁଣିବ ବୋଲି ଉମା ଭାବି ନଥିଲା । ଏବେ ସେ ଏଇ ପଦେ କଥାରେ ଭାଙ୍ଗି ପଡ଼ିଲା । ଉତ୍ତର ଦେବାକୁ ସେ ନିଜେ ଚାହୁଁ ନଥିଲେ ମଧ୍ୟ ତା ପାଟିରୁ ପଦେ ଖସି ପଡ଼ିଲା— ଭାରି ଭଲ ମଣିଷଟିଏ ବୋଉ !

ବୋଉ ନୀରବରେ ଘରେ ପଶିଲେ । ଉମା କବାଟ ଆଉଜେଇ ପଛେ ପଛେ ଗଲା । ପୁଣି ମନତଳ ଖଟ୍ ଖଟ୍ ହେଲା— ଏ ଅସମୟରେ ବୋଉକୁ ସେ ଏପରି କହିଲା କାହିଁକି ? କଣ ସେ ଭାବିଥିବ ?

ଭାତଗୁଣ୍ଡା ଭୁଣ୍ଡିକୁ ନେଇଁ ନେଇଁ ହାତ ଅଟକି ଗଲା । ଗଡ଼ନାୟକଙ୍କ ବିମଳ ଆତ୍ମୀୟତାର ଶ୍ରଦ୍ଧାଳୁ ସାନିଧ-ଅନୁଭୂତି ତାର ମନେ ପଡ଼ିଲା । ତାର ଭାବନା ମଧ୍ୟରେ ଲହଡ଼ି ଭାଙ୍ଗିଲା ତାଙ୍କର ଦୁର୍ଲ୍ଲଭ ମାନବିକତାର ସରଳ ଆନ୍ତରିକ ଅମୃତ ସ୍ୱାଗ । ମଣିଷ ଏମିତି ବି ହୋଇ ପାରନ୍ତି ? ତାର ହୃଦୟ କୋଣରେ ଭୁହାଇ ଭୁହାଇ ପ୍ରଶ୍ନ ଉଠିଲା ।

ଉମା ଆଜି ଚକିତ ହୋଇଛି । ଅଗଣିତ ଅଭଦ୍ର, ଦଗାଦାର ଜନ-ଗହଣରେ ସେ ଆଜି ମଣିଷ ଦେଖିଛି । ମଣିଷ ମଣିଷ ହୋଇପାରେ, ସେ ଆଜି ବୁଝି ପାରିଛି ।

ଉମା ଖାଇ ବସିଥିଲା ସତ, ମାତ୍ର ଖାଇବାରେ ତାର ଆଗ୍ରହ ନଥିଲା । ଖାଲି ପ୍ରାଣର ଅନ୍ଧ କନ୍ଦରେ ଭଲ ମଣିଷର ସ୍ନେହ, ସୌହାର୍ଦ୍ଦ୍ୟ, ମୈତ୍ରୀର ମଧୁର ଭାବନା ଖୁନ୍ଦିହୋଇ ଯାଉଥିଲା, ଉଠୁଥିଲା ପଡୁଥିଲା ।

'ଆସିବା ବେଳେ ଏମିତି ମୁହଁ ଶୁଖେଇ ଥିଲୁ କାହିଁକି ? କିଏ ଆଉ କଣ କହିଲା କି ?'

ପାନ ଭାଙ୍ଗୁ ଭାଙ୍ଗୁ ବୋଉ ପଚାରିଲେ ।

ଭଜା ମାଛ ଖଣ୍ଡେ ଭୁଣ୍ଡିକୁ ନେଉ ନେଉ ଉମା ଉତ୍ତର ଦେଲା—ଏ ସଂସାରଟା କେମିତି ମୋ ଉପରେ ମାଡ଼ି ପଡ଼ିଲା ପରି ଲାଗୁଥିଲା ବୋଉ ! ତାଙ୍କ ପାଖରୁ ଆସି ତୋ ନିକଟରେ ପହଞ୍ଚିବା ଭିତରେ ମୋର କଣ ମନେ ହେଉଥିଲା ଜାଣୁ ?

'କଣ ?'

'ମନେ ହେଉଥିଲା, ତୋତେ ଓ ତାଙ୍କୁ ଛାଡ଼ିଦେଲେ ଏହି ବିରାଟ ବ୍ରହ୍ମାଣ୍ଡରେ ମୋର ମନ ଜାଣିବାକୁ, ମୋ କଥା ବୁଝିବାକୁ ଆଉ କେହି ନାହାନ୍ତି । ମୁଁ ଖାଲି ଖାଁ ଖାଁ ନିଛାଟିଆ ଠାରେ ଏକୁଟିଆ ହୋଇ ପଡ଼ିଥିଲି । ବୁଝିଲୁ ବୋଉ, ଆଜି ଯେତେ ଲୋକ ବନ୍ଧୁ ବୋଲି, ସାଙ୍ଗ ସାଥୀ, ସାହି ପଡ଼ିଶା କି ଆପଣା ଗୋଷ୍ଠି ଅଥବା

ସମଧରମୀ ବୋଲି ବେଳେବେଳେ ପାଖେଇ ଆସନ୍ତି ସମସ୍ତେ ସ୍ୱାର୍ଥପର, ସମସ୍ତେ ଦଗାଦାର । ମୁଁ ଭାବୁଥିଲି, ଘଟନା ଚକ୍ରରେ ମୋତେ ଯଦି ତୋର ଓ ତାଙ୍କର ପାଖରୁ ଚାଲିଯିବାକୁ ପଡ଼େ, ବଞ୍ଚିବ କାହାକୁ ଦେଖି ? ଏମାନେ ମଣିଷକୁ ଜୀଅଁନ୍ତା ପୋତିଦେବେ ବୋଉ !'

'କେଉଁମାନେ ?'

'ତୋତେ, ତାଙ୍କୁ ଓ ସେ ଭିକାରି ବୁଢ଼ାଟିକୁ ଛାଡ଼ିଦେଲେ ବାକି ସମସ୍ତେ ।'

'ତୋ ବାପା, ଭାଇ ବି ?'

'ହଁ, ବୋଉ । ଅସଲ କଥା ବୁଝିବା ଯାଏ ଧୈର୍ଯ୍ୟ ଧରି ନପାରି ସମସ୍ତେ ଅନଷ୍ଟ କରି ପକାନ୍ତି ବୋଉ!' ଉମା ଲୁହ ପୋଛିଲା ।

ବୋଉ ଦୀର୍ଘ ନିଶ୍ୱାସ ପକେଇ ଶୋଇବା ଘରକୁ ଚାଲିଗଲେ । ସେ ମଧ୍ୟ ବାଁ ହାତ ପାପୁଲିରେ ଆଖି ପୋଛୁଥିଲେ ।

**ଉ**ଦୁଉଦିଆ ଖରାବେଳ ।

ଫୁଲ ବଗିଚାର ତମାଳ କୁଞ୍ଜ ତଳେ ଉମା ବହିଟିଏ ଧରି ବସିଥିଲା । ଏକାନ୍ତରେ କିଛି ଭାବିବାକୁ ଥିଲେ ସେ ବହି ଖଣ୍ଡିଏ ଧରି ଏଇଠି ବସେ । ନାଁକୁ ମାତ୍ର ବହିଟିକୁ ମେଲାଇ ଧରି ଏକାଗ୍ରଭାବେ ସେ ଚିନ୍ତାମଗ୍ନ ହୋଇ ଯାହା ଭାବିବାର କଥା ଭାବୁଥାଏ । ଆଜି ବି ସେମିତି ବସି ବସି ସେ ତାର ନିଷ୍ପତ୍ତି ବିଷୟରେ ଭାବିଲା—

ଉଡ଼ା ଖବର ଓ ଶୁଣା କଥା ଉପରେ ବିଶ୍ୱାସ କରି ବାପା ସନ୍ଦେହ କରି ସାରିଲେଣି । ବୋଉ ବି ଭ୍ରମରେ ପଡ଼ିଯାଉଛି । ସହର ଲୋକଙ୍କ କଥା ତ ଛାଡ଼ । ସେହି ଭିକାରି ବୁଢ଼ା ଓ ଗଡ଼ନାୟକ ବାବୁଙ୍କୁ ଛାଡ଼ିଦେଲେ, ଆଉ କେହିହେଲେ ମଧ୍ୟ ତାକୁ ସଂପୂର୍ଣ୍ଣ ବିଶ୍ୱାସ କରୁ ନାହାନ୍ତି । ଲୋକଙ୍କର ସନ୍ଦେହ ସଂକୁଳ କଳ୍ପନା ଜଳ୍ପନା ଆଗରେ ତାର ସକଳ ନିଷ୍ଠା, ସକଳ ତ୍ୟାଗ ଓ ସାଧନା ପଣ୍ଡ ହୋଇ ଯାଉଛି । ଏପରି ପରିସ୍ଥିତିରେ ଏହି ସହରର ଏହି କୁଟିଳ ପରିବେଶ ମଧ୍ୟରେ ରହି ସେ ତା ଜୀବନର ଲକ୍ଷ୍ୟ ହାସଲ କରିବ କିପରି ? ନା ନିଶ୍ଚୟ ଏ ସହର ପରିତ୍ୟାଗ କରି ଚାଲିଯିବାକୁ ହେବ । ଭିକାରି ବୁଢ଼ା ହେବ ତାର ସହାୟକ । ସହାୟକ ତ ନୁହେଁ, ଏକମାତ୍ର ଆଶ୍ରୟ ।

ପରେ କେବେ ପରିସ୍ଥିତି ଅନୁକୂଳ ହେଲେ, ସେମିତି ଦରକାର ପଡ଼ିଲେ ଗଡ଼ନାୟକ ବାବୁଙ୍କ ସହାୟତା ସେ ଲୋଡ଼ିପାରେ ।

ବେଶ୍... ଆଉ କିଛି ଭାବିବାର ନାହିଁ । ଭିକାରି ବୁଢ଼ାକୁ ତ କହି ସାରିଛି । ସେ କାଲି ସକାଳକୁ ବସ୍ ଷ୍ଟାଣ୍ଡରେ ମିଳିବ । ଆଉ କିଛି କରିବାର ନାହିଁ ।

ମନେ ମନେ ଉମା ଘୋଷଣା କଲା, ଦୁନିଆରେ ପାପ ଶକ୍ତିର ପ୍ରକାଶ୍ୟ ଆକ୍ରମଣର ସମ୍ମୁଖୀନ ହେବାପାଇଁ କେବଳ ଏହି ସହର ନୁହେଁ, ସମଗ୍ର ଭାରତର ନର ନାରୀଙ୍କୁ ଆଜି ଜାଗ୍ରତ କରିବା ଦରକାର । ଏହାହିଁ ତା ଜୀବନର ପରମ ଲକ୍ଷ୍ୟ । ଏ ଲକ୍ଷ୍ୟ ହାସଲ ପାଇଁ ଯେଉଁଠିକି ଯିବାକୁ ପଡ଼ିବ ସେ ଯିବ । ଯେତେ କଷ୍ଟ ପାଇବାକୁ ହେବ, ସେ ସହିବ । ଯାହା କରିବାକୁ ପଡ଼ିବ କରିବ । ଯେତେ ପ୍ରତିଷ୍ଠିତ ବାଧା ପ୍ରତିବନ୍ଧକ ଦେଖା ଦେଲେ ବି କୌଣସିଠାରେ ପ୍ରତିରୋଧକୁ ସେ ସ୍ୱୀକାର କରିନେବ ନାହିଁ । ମାନିବ ନାହିଁ, ଡରିବ ନାହିଁ ।

ଅକସ୍ମାତ ଗଡ଼ନାୟକ ବାବୁ କହିଥିବା ଗୋଟିଏ ବାକ୍ୟ ତାର ମନେ ପଡ଼ିଗଲା— 'ମଞ୍ଜୁମାଳା ପରି, ପ୍ରିୟରଞ୍ଜନ ପରି ବହୁ ବ୍ୟକ୍ତିଙ୍କ ଜୀବନଯାପନ ଧାରାକୁ ସଜାଡ଼ି ସୁନ୍ଦର କରି ଗଢ଼ିବାକୁ ଉଦ୍ୟମ କରିବ ।'

'ସେ କାମ କଣ ମୋ ଦ୍ୱାରା ସମ୍ଭବ ?' ପୁଣି ସେହି ପୁରୁଣା ପ୍ରଶ୍ନ ଉଠିଲା ତା ମନରେ ।

'ଶେଷଥର ପାଇଁ ଚେଷ୍ଟା କରାଯାଉ ।' ଉମା ଉଦ୍ଦାମ ଉତ୍ସାହରେ ବସିବା ଥାନରୁ ଉଠିଲା । ଘରକୁ ଯାଇ ବହି ଖଣ୍ଡିକ ରଖିଦେଲା । ଲୁଗା ବଦଳାଇ ସାରି ବୋଉଙ୍କୁ କହିଲା, ବୋଉ, ଟିକିଏ ଅଫିସ ଆଡୁ ଆସୁଛି ।

'ଶୀଘ୍ର ଫେରିବୁ ।' ନିର୍ବିକାରଭାବେ ସେ ଉତ୍ତର ଦେଲେ ।

ରିକ୍ସା ଖଣ୍ଡିଏ ଧରି ଉମା ସିଧା ଚାଲିଲା ମଞ୍ଜୁମାଳା ଘରକୁ । ତିନି ଦିନ ପରେ ଦ୍ୱି ପହରଠାରେ ତାକୁ ଏକୁଟିଆ ଯାଉଥିବା ଦେଖି ସଡ଼କ ଦି କଡ଼ର ଦୋକାନୀ-ମାନେ ଲାଲଆ ଆଖିରେ ଉଦାସ ବିକଳ ମନରେ ଚାହିଁବାକୁ ଲାଗିଲେ । ସେ ଆଡ଼କୁ ନିନ୍ଦା କରିବାକୁ ଉମାର ବେଳ ନଥିଲା । ସେ ଭାବୁଥିଲା, ମଞ୍ଜୁମାଳାକୁ ଯଦି ସେ ବାଟକୁ ଆଣି ପାରିବ, ତା ହେଲେ ଅନ୍ତତଃ ତାର ଆତ୍ମବିଶ୍ୱାସ ଦୃଢ଼ୀଭୂତ ହେବ । ସେ ଦ୍ରୁତ ଗତିରେ ଅଗ୍ରସର ହୋଇ ପାରିବ ।

ମଞ୍ଜୁମାଳା ଘର ଭିତରେ ଶୋଇଥିଲା । ଧନ ବାରିକ, ତାର ସାଙ୍ଗ ସ୍ୱବର୍ଣ୍ଣ ମିସ୍ତ୍ରୀ, ଗୋରମଣୀ ମାଷ୍ଟ୍ରାଣୀର ସ୍ୱାମୀ ବଳରାମ— ଯିଏ କି ରେଭେନ୍ୟୁ ଇନସ୍‌ପେକ୍ଟର ଥିଲାବେଳେ ଖଜଣା ଆତ୍ମସାତ୍ କରି ଜେଲ୍ ଯାଇଥିଲା; ଆଉ ଉଲ୍ଲା ମହାକୁଡ଼, ମ୍ୟୁନିସିପାଲଟି କାଉନ୍‌ସିଲର ଗୋପୀ ଗଉଡ଼ର ଶଳା ଗୋବିନ୍ଦ ପ୍ରଭୃତି ପିଣ୍ଡାରେ ବସି ତାସ୍ ଖେଳୁଥିଲେ । ପାନଛେପ, ଖଣ୍ଡିଆ ବିଡ଼ିର ଅସଂକଟିଆ ସମାବେଶ ହେତୁ ପିଣ୍ଡା ତଳକୁ ଅନେଇ ହେଉ ନଥିଲା । ତଥାପି ଉମା ରିକ୍‌ସାରୁ ଓହ୍ଲାଇ ସେଇ ପାଖରେ ଠିଆ ହେଲା ।

ଏପରି ଅବେଳଟାରେ ଉମା ଭଳି ଜଣେ ବିଖ୍ୟାତ ମହିଳାଙ୍କୁ ପାଖରେ ଦେଖି ସମସ୍ତେ ଚମକି ପଡ଼ିଲେ । ଧନ ବାରିକ ହାତଯୋଡ଼ି ଠିଆହେଲା । ଅନ୍ୟମାନେ ବି ନମସ୍କାର କରୁ କରୁ ଖସି ଚାଲିଯିବାକୁ ବସିଲେ ।

'ବସ ବସ । ମଞ୍ଜୁ କାହିଁ ?' ପ୍ରତି-ନମସ୍କାର ଜଣାଇ ଉମା ପଚାରିଲା ।

'ଶୋଇଛି ।' ଧନ ବାରିକ କହିଲା ।

ଉମା କବାଟ ଖୋଲି ଘର ଭିତରେ ପଶିଲା । ଇସ୍···ମଦ ଗନ୍ଧରେ ନାକ ଫାଟି ପଡୁଛି । ଠିଆହୋଇ ଚାରି ଆଡ଼କୁ ଟିକିଏ ଅନେଇସାରି ଉମା ନିର୍ବିକାର ଚିତ୍ତରେ ମଞ୍ଜୁମାଳା ଶୋଇଥିବା ଖଟ-ମୁଣ୍ଡରେ ବସି ପଡ଼ିଲା ।

ମଞ୍ଜୁମାଳାର ନିଦ ଭାଙ୍ଗିଗଲା । ସେ ଧଡ଼୍‌ପଡ଼ ହୋଇ ଉଠି ପଡ଼ିଲା ।

'ଆରେ, ଏପରି ଭାବରେ ଆଜି···' ମଞ୍ଜୁମାଳା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

'ଗୋଟିଏ ଜରୁରୀ କାମରେ ଆସିଛି ।'

'ଖବର ଦେଇଥିଲେ ହୋଇ ନଥାନ୍ତା ?'

'ନା ମଞ୍ଜୁ, ସତରେ ଏକ ଜରୁରୀ କାମରେ ମୋତେ ଆସିବାକୁ ହୋଇଛି ।'

'ସେ ଚଉକି ଉପରେ ବସନ୍ତୁ ।' ମଞ୍ଜୁମାଳା ପାଣି ହାତରେ ମୁହଁ ପୋଛୁ ପୋଛୁ ପଚାରିଲା, କଣ କୁହନ୍ତୁ ।

ଉମା ଗମ୍ଭୀର କଣ୍ଠରେ କହିଲା, ମୁଁ ଏ ସହରରେ ରହି କାମ କରିବି କି ନାହିଁ, ପ୍ରକୃତରେ ତୁମେ କଣ ଚାହୁଁଛ— ମୋତେ ଆଜି ସଫା ସଫା କହିଦିଅ ।

ମଞ୍ଜୁମାଳାର ଢେଲା ଢେଲା ଆଖି ଦୁଇଟି ଫୁଲ ଫୁଟିଲା ପରି ଏଡ଼େ ଏଡ଼େ ହୋଇଗଲା । ସେ ବିସ୍ମୟାବିଭୂତ ହୋଇ ପଚାରିଲା, ଖୋଲି କରି କୁହ !

'ମୋର ମନେ ପଡ଼ୁଯାଉଛି ମଞ୍ଜୁ, ସଭା ସମିତିରେ ଭାଷଣ ଦେଲାବେଳେ ତୁମେ, ମୁଁ, ସମସ୍ତେ କହୁଥାଉଁ— ଜାତୀୟ ଜୀବନକୁ ସୁଦୃଢ଼ କରିବାକୁ ହେଲେ ବ୍ୟକ୍ତି ଚରିତ୍ର ନିର୍ମାଣ ଅତ୍ୟନ୍ତ ପ୍ରୟୋଜନ । କିନ୍ତୁ ଏ ସବୁ କଣ ହେଉଛି ? କଣ ଆମେ କରୁଛେ ? କଣ ମୁଁ ଦେଖୁଛି ? ଯଦି ତୁମ ଭଳି ଝିଅ, ମୋର ସହକର୍ମିଣୀ ହୋଇ, ସମାଜର ସେବାକୁ ଜୀବନର ବ୍ରତ ଘୋଷଣା କରିସାରି ଯଦି ଏପରି କପଟପୂର୍ଣ୍ଣ ଜୀବନକୁ ପସନ୍ଦ କରୁଥିବ, ଜାତିର ଲକ୍ଷ୍ୟ ହାସଲ ହେବ କିପରି ? ଏଇ ତୁମରି ଘର ବାରଣ୍ଡାରେ ବଳିଷ୍ଠ ସକ୍ଷମ ଯୁବକମାନେ ବସି ବସି ମଦ ପିଇ ପିଇ, ତାସ୍ ଖେଳି ଖେଳି ଯଦି ବୃଥାରେ ଦିନ କାଟୁଥିବେ, .ଆମେ ଏ ଦେଶକୁ ଗଢ଼ିବା ଆଉ କେଉଁମାନଙ୍କୁ ନେଇ ? ଆମ୍ଭେମାନେ ଦେଶ, ସମାଜ ପାଇଁ ଲକ୍ଷେ ସଭା ସମିତି କଲେ ହେବ କଣ ?

ସତ କହୁଛି ମଞ୍ଜୁ, ତୁମରି ପରି ଝିଅମାନେ, ଆଉ ପିଣ୍ଡାରେ ବସି ତାସ୍ ଖେଳୁଥିବା ଯୁବକମାନେ ଯଦି ସରଳ, ସଳଖ ଜୀବନଯାପନ କରିବାକୁ ଦୃଢ଼ପରିକର ନହେବେ ତା ହେଲେ ମୁଁ ଏ ଦେଶରେ, ଏ ଦେଶର ଜଣେ ସେବିକା ଭାବରେ ଲଜ୍ଜ୍ୟାଜନକ ଜୀବନ ଧାରଣ କରି ରହିପାରିବି ନାହିଁ । ମୁଁ କୁଆଡ଼େ ପଳେଇ ଯିବି । ଆତ୍ମଗୋପନ କରି ସଢ଼ି ସଢ଼ି ମରିଯିବି ପଛେ ଦାଣ୍ଡ ବାଟରେ ମୁହଁ ଦେଖାଇ ଚାଲି ପାରିବି ନାହିଁ ।'

ଉମାର ଆଖି ଯୋଡ଼ିକ ଲୁହ ଟଳ ଟଳ ହେଲା । ମଞ୍ଜୁମାଳା କାଠ କି ପଥର ଭଳି ଠିଆହୋଇ ରହିଲା । ତାର ଆଉ ପାଟି ଫିଟିଲା ନାହିଁ । ଉମା ପୁଣି ଧୀରେ ଧୀରେ କହିବାକୁ ଲାଗିଲା—

କୁହତ ମଞ୍ଜୁ, ଦେଶସାରା ଯେତେବେଳେ ଜାତିର ପ୍ରତିରକ୍ଷା ଲାଗି ଡାକରା ପଡ଼ୁଛି, ସେତେବେଳେ ମୁହଁରେ ସର୍ବଦା ହୁଁ ହାଁ କରି କାର୍ଯ୍ୟରେ ଆମେ କଣ କରୁଚେ ? ତୁମକୁ ବୁଝେଇ କହିବି କଣ ? ତୁମେ ତୁମରି ମନକୁ ପଚାର । ମୋତେ ଲାଗୁଛି, ଆଜି ଏ ଦେଶର ପ୍ରତ୍ୟେକ ଯୁବକ ଯୁବତୀ ଅତି ନିର୍ଲଜ ଭାବରେ ମନେ ମନେ କହୁଛନ୍ତି— ଅନ୍ୟ କେହି ଅନ୍ୟାୟ କରନ୍ତୁ ନାହିଁ, ସ୍ୱାର୍ଥପର ହୁଅନ୍ତୁ ନାହିଁ, ଜାତୀୟ ପ୍ରଗତିକୁ ବ୍ୟାହତ କରନ୍ତୁ ନାହିଁ, ନିଜେ କିନ୍ତୁ ବେଳ ପଡ଼ିଲେ ନିଜପାଇଁ ଟିକିଏ ଟିକିଏ, କିଛି କିଛି ପାପ କରୁଥିବେ । ନୁହେଁ କି ? କିନ୍ତୁ ଏହା କଣ କରଣୀୟ ?

କହ ମଞ୍ଜୁ, ତୁମେ ଆଗ ନଜକୁ ବଦଳାଇବ କ ନାହିଁ ? ମୁ ଆଜ ଆସିଛୁ ତୁମକୁ ପଗ୍ଭରବାକୁ, ଶେଷଥର ପାଇଁ ପଗ୍ଭରବାକୁ ଯେ ଆଜ ଉତ୍କ୍ଷିପ୍ତ ପାପ ଶକ୍ତର ଅନ୍ୟାଯ୍ଯ ଆକ୍ରମଣରୁ ମଣିଷ ସମାଜକୁ ରକ୍ଷା କରବା ନମନ୍ତେ ତୁମ ପର ଝିଅମାନଙ୍କୁ ଗଢିବା ପାଇଁ, ଦେଶବାସୀଙ୍କୁ ଜାଗ୍ରତ କରବା ସକାଶେ ତୁମ୍ଭମାନଙ୍କୁ ନେଇ ମୁଁ ଯେଉଁ ଉଦ୍ୟମ କରୁଛୁ, ସେଥିରେ ତମର ବିଶ୍ୱାସ ଅଛୁ କ ନାହିଁ ? କୁହ ! ଯଦ ଅଛୁ, ତୁମେ ମୋ କଥା ଶୁଣ । ତୁମେ ଭଲ ହୁଅ ।

ମୁଁ ଯଦ ତୁମକୁ ବଦଳାଇ ପାରବ ନାହିଁ, ଆମେ ଦୁହେଁ ମିଶି ଯଦ ତୁମ ପିଣ୍ଡାରେ ଆଡ୍ଡା ଜମେଇ ବସିଥିବା ପଥଭ୍ରଷ୍ଟ ଯୁବକମାନଙ୍କୁ ପ୍ରଭାବତ କର ପାରବା ନାହିଁ, ତାଙ୍କର ହୃଦୟକୁ ପରବର୍ତ୍ତନ କର ପାରବା ନାହିଁ, ଗ୍ଭଲ ସମସ୍ତେ ମିଶି ମଦ ପିଇବା, ତାସ୍ ଖେଳ ଖେଳ ବସିବା, ଲଙ୍ଗଳା ହୋଇ ଧେଇ ଧେଇ ନାଚବା । ନାଚ ନାଚ ଗଡ଼ ଗଡ଼ ମରବା ।

ଉମାର ଉତ୍ତେଜତ ମାନସିକ ଅବସ୍ଥାର ଉଗ୍ର ପ୍ରଭାବ ଓ ଭୟଙ୍କର କଣ୍ଠ ସ୍ୱରରେ ମଞ୍ଜୁମାଳା ଭୟଗ୍ରସ୍ତ ହୋଇ ପଡ଼ଲା । କେହି ତାର କଳଜା ମଝିଟାକୁ କଖାରୁ କୋରଣାରେ କୋର ପକାଉଥିବା ପର ତାକୁ ଲାଗିଲା । ଦି ଆଖିରୁ ଧାର ଧାର ଲୁହ ଝର ପଡ଼ଲା ।

ଦାଣ୍ଡ ପିଣ୍ଡାରେ ଯେଉଁମାନେ ତାସ୍ ଖେଳୁଥିଲେ— ଉମା ଆସିଲା ପରେ ଖେଳ ବନ୍ଦ କର ଗପ କର କର ବସିଥିଲେ; ସେମାନେ ଏବେ ଘର ଭତରେ ଉମାର ଗର୍ଜନ ତର୍ଜନ ଶୁଣି ଜଣେ ପରେ ଜଣେ ସେଠାରୁ ଖସିବାକୁ ବସିଲେ ।

ରାବଣ ମିସ୍ତ୍ରୀ ଓ ଉଲ୍ଲା ମହାନ୍ତ୍ରକୁଡ଼ ଦାଣ୍ଡ ଅଗଣା ଡେଇଁ ଓସ୍ତ ଗଛ ପର୍ଯ୍ୟନ୍ତ ଗ୍ଭଲ ଯାଇଥିଲେ । ଉମା ତାଙ୍କୁ ଲକ୍ଷ୍ୟକର ପାଗଳମାଙ୍କ ପର ପଛରୁ ଡାକ ପକେଇଲା— ଶୁଣ ··· ଏ ··· ଆସ ।

ସେମାନେ ଅଟକ ଗଲେ ।

'କୁଆଡ଼େ ଗ୍ଭଲ ଯାଉଛ ? ଆସ, ଶୁଣି ଯାଅ—' ଉମା ପୁଣି ପାଟିକଲା ।

ଡରମର ସମସ୍ତେ ସେଇଠି ଠିଆହେଲେ । ସାମ୍ନା ଘର ଅଗଣାରେ ସେହି ଓସ୍ତଗଛ ଗୁଲଡଳେ ଝିଙ୍ଗୁରୁ ମାଝିର ଯୁବତୀ ପତ୍ନୀ ତାର ଆଠ ମାସର ଶିଶୁ କନ୍ୟାଟିକୁ କୋଳରେ ଧର ବସିଥିଲା । ଝିଙ୍ଗୁରୁ ମାଝି ଦୁଇ ମାସ ହେଲା ଭାରତୀୟ ସୈନ୍ୟ ବାହିନୀରେ ଯୋଗଦେଇ ଗ୍ଭଲ ଯାଇଛୁ । ଏ କଥା ଉମା ଆଗରୁ ଜାଣେ ।

ଆଖିରେ ପଡ଼ିବା ମାତ୍ରେ ଚନ୍ଦ୍ରିପାଣି ଉମା ତା ପାଖକୁ ଝପଟି ଗଲା । ସେହି ଶିଶୁ କନ୍ୟାଟିକୁ ତା ମା କୋଳରୁ ଟେକିନେଇ ଆଣିଲା । ତାର କାନ୍ତ କୋମଳ ମୁହଁରେ ବାରମ୍ବାର ଜୀବନ ଉଚ୍ଛୁଳା ଚୁମ୍ବନ ଦେଇସାରି ଏମାନଙ୍କୁ ଚାହିଁ କହିଲା— ଦେଖ, ସମସ୍ତେ ଆଖିଟାରି ଦେଖ । ଏ ଦେଶର ଭବିଷ୍ୟତ, ଜାତିର ବାହକ ଏ ମଣିଷ ଛୁଆ ତୁମମାନଙ୍କୁ, ତୁମଭଳି ସକ୍ଷମ ଯୁବକମାନଙ୍କୁ କଣ କହୁଛି, ମନଦେଇ ଶୁଣ—

ଚୀନ ସରକାର କଲମ୍ବୋ ସମ୍ମିଳନୀର ରାଜିନାମା ପ୍ରସ୍ତାବକୁ ପ୍ରତ୍ୟାଖାନ କରିଛି । ପାକିସ୍ଥାନ ନିଷ୍ଠୁର ଭାବରେ ପ୍ରକାଶ୍ୟରେ ଶତ୍ରୁ ସାଙ୍ଗରେ ହାତ ମିଳାଇଛି । ସୀମାନ୍ତରେ ଆକ୍ରମଣକାରୀ ଚୀନ୍ ଆହୁରି ସୈନ୍ୟ ସମାବେଶ କରୁଛି । ହୁଏତ ସେମାନେ ସମୁଦ୍ରର ଉତ୍ତାଳ ତରଙ୍ଗ ପରି ମାଡ଼ି ଆସିବେ ଗୋଟାଏ ରାତିରେ । ବୋମା ପକେଇବେ ।

ଏ ଦେଶର ଏହିଭଳି କୋଟି କୋଟି ଶିଶୁଙ୍କର ଏଇ— ଦେଖ ଏ ଆଡ଼େ— ଏହି ନିର୍ଦ୍ଦୋଷ ଆଖିଗୁଡ଼ିକ ଫୁଟିଯିବ । ଏଇ କୋମଳ ଦେହରୁ କଅଁଳ ହାଡ଼ ନରମ ମାଉଁସ ଚେନା ଚେନା ହୋଇ ଝଡ଼ି ପଡ଼ିବ । ଜଳି ପୋଡ଼ି ପାଉଁସ ହୋଇଯିବ । ତମେ ବସି ରହି, ତମେ ବଞ୍ଚି ରହି ଲାଭ କଣ ? ପ୍ରୟୋଜନ କଣ ?

ପ୍ରକୃତରେ ଟିକିଏ ହେଲେ ଲାଜ ଲାଗୁନାହିଁ ତୁମମାନଙ୍କୁ ? ଦେଶର ବିପତ୍ତି ବେଳେ ତାସ୍ ଖେଳି, ମଦ ପିଇ ପିଇ ରୋଜଗାରର ଅପବ୍ୟବହାର କରିବ, ବୟସ ଆୟୁଷ, ଜନମ ଜୀବନର ଅପବ୍ୟବହାର କରିବ ? କାହିଁକି ?

ମଣିଷର ପ୍ରାଣପ୍ରିୟ ସ୍ୱାଧୀନତା, ନ୍ୟାୟ ଓ ମଣିଷପଣିଆ ଉପରେ ଆଜି ବିପତ୍ତି ଘନେଇ ଆସିଛି, ଏତିକି ବେଳେ ଚୁପ୍ ହୋଇ ବସି ରହିବା ଠିକ୍ ହେବ ? ତମେ ଯିଏ ହୁଅ ପଛେ, ତମେ ଭାରତୀୟ, ତମେ ସକ୍ଷମ ମଣିଷ ! ତୁମକୁ ଜୀବନ ପଣ କରି କର୍ତ୍ତବ୍ୟ ତୁଲେଇବାକୁ ପଡ଼ିବ ।

କିଛି ନ ହେଲେ ବି ଏ ଖରା ବେଳଟାରେ ଗୁରିଟା ଫଳ ପରିବା କିଆରିରେ ପାଣି ମଡ଼େଇ ପାରନ୍ତ, ଜରୁରୀକାଳୀନ ସଡ଼କ ନିର୍ମାଣରେ ସାହାଯ୍ୟ କରି ପାରନ୍ତ— ସୀମାନ୍ତ ଘାଟିରେ ବନ୍ଧୁକ କାନ୍ଧେଇ ପହରା ଦେଇ ପାରନ୍ତ— କେତେ କଥା ହୋଇ ପାରନ୍ତା । ଏ ଦେଶ କେତେ ଆଶା ନ କରୁଛି ତୁମମାନଙ୍କ ପରି ଯୁବକମାନଙ୍କ ଠାରୁ ? ଛାତିରେ ହାତ ରଖି କୁହ, ଏ କଥା ସତ କି ମିଛ !

'ସତ ।'

'ଆମେ ଭୁଲ୍ କରୁଥିଲୁ ।'

'ବହୁତ ଭୂଲ୍ କର ଦେଇଛୁ ।'

ରବଣ ମିସ୍ତ୍ରୀ, ଧନ ବାରକ, ଉଲ୍ଲା ମହାକୁଡ଼ ଓ ଆଉ ଯେଉଁମାନେ ସେଠି ଏ ଭିତରେ ରୁଣ୍ଡ ହୋଇ ଯାଇଥିଲେ ସମସ୍ତେ ଇଏ ତା ମୁହଁକୁ ସିଏ ଯା ମୁହଁକୁ ଚାହିଁ ଚାହିଁ ଏପରି ପଦେ ପଦେ ଶୁଣେଇ ଶୁଣେଇ କହିବାକୁ ଲାଗିଲେ ।

ଆନନ୍ଦରେ ଉଚ୍ଛୁଳି ଉଠିଲା ଉମାର ଅନ୍ତର । ସେ ଅନୁଭବ କଲା, ସତେ ଯେମିତି ସୀମାନ୍ତ ଲଢ଼େଇରେ ଆଜି ସେ ହଜାରେ ଆକ୍ରମଣକାରୀଙ୍କୁ ତିନି ମିନଟ ଭିତରେ ମାରି ଗଡ଼େଇ ଦେଇଛି । ସେ ବିହ୍ୱଳିତ ଭାବରେ ବାରମ୍ବାର ଏମାନଙ୍କ ଆଡ଼କୁ ମୁଗ୍ଧ ଦୃଷ୍ଟିରେ ଅନେଇ ଅନେଇ ଘର ଭିତରକୁ ଗଲା । ଦୁଇ ହାତ ପ୍ରସାରି ମଞ୍ଜୁମାଳାକୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ ରଖି କହିଲା, ସତ କହୁଛି ମଞ୍ଜୁ, ଧନ ବାରିକର ଦେହରେ ମୁହଁରେ ମୁଁ ଦେଖୁଛି, ଚାଳିଶି କୋଟି ଭାରତୀୟଙ୍କ ଜୀବନର ପ୍ରତିବିମ୍ବ; ମଞ୍ଜୁମାଳାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗର ଚଳ ପ୍ରଚଳନରେ ମୁଁ ଅନୁଭବ କରୁଚି, ଚାଳିଶି କୋଟି ଭାରତୀୟ ନର ନାରୀଙ୍କ ଆତ୍ମାର ସଙ୍ଗୀତ, ତେଣୁ ମୁଁ ଚାହେଁ ଧନ ବାରିକ ସଚ୍ଚୋଟ ହେଉ, କର୍ତ୍ତବ୍ୟ ପରାୟଣ ହେଉ, ମଞ୍ଜୁମାଳା ହେଉ ଏକ ଅଖଣ୍ଡ ଜାତୀୟ କର୍ମ ପ୍ରବାହର ଅନନ୍ତ ଉତ୍ସ । ତୁମ୍ଭମାନଙ୍କ ଘରେ ଦୁର୍ନୀତି, ବ୍ୟଭିଚାର ମୁଁ ଆଉ ସହି ପାରିବି ନାହିଁ ମଞ୍ଜୁ !

ମଞ୍ଜୁମାଳା ଉତ୍ତେଜିତ ହୋଇ ଗମ୍ଭୀର ଘରୁ ଗୋଟି ଗୋଟି କରି ସବୁ ମଦ ବୋତଲ, ସବୁ ମଦ ହାଣ୍ଡି ବାଡ଼ିପଟକୁ ଫୋପାଡ଼ି ଦେଲା । ଧନ ବାରିକ ଘର ଭିତରକୁ ପଶି ଆସି ଉମାର ଗୋଡ଼ତଳେ ଲମ୍ବ ହୋଇ ପଡ଼ିଯାଇ କହିଲା, ମାଫ୍ କର ମା । ଆଉ ଦୋଷ କରିବୁ ନାହିଁ । ଏ ଜୀବନକୁ ତୋର ପାଦ ତଳେ ସମର୍ପି ଦେଲୁ । ଆଜିଠୁଁ ତୁ ଯାହା କହିବୁ ନିଆଁରେ ପଶ୍, ପଶିବୁ । ତୁ ଯାହା କହିବୁ ବିଷ ଖା, ଖାଇବୁ । ଖାଲି ମୁଁ ନୁହେଁ, ମୋ ସାଙ୍ଗ ସାଥୀ ଯେଉଁ ତିରିଶି କି ଚାଳିଶି ଅଛନ୍ତି, ଆଜିଠୁଁ ତୋର କଥା ତୁଠାଇବୁ ନାହିଁ । ସେମାନଙ୍କ ପକ୍ଷରୁ ମୁଁ କଥା ଦେଉଛି । କହ, ଯୁଦ୍ଧପାଇଁ ଆମେ କଣ କରିବୁ ?

ଉମା କରୁଣାମୟୀ, କ୍ଷମାମୟୀ, ଦୟାମୟୀ ଜନନୀର ଦୃଷ୍ଟି ନିକ୍ଷେପ କଲା ଧନ ବାରିକ ଉପରକୁ । ମମତା ଅଜାଡ଼ି ହୋଇ ପଡ଼ିଲା । ତା ମୁହଁରୁ ବାହାରି ପଡ଼ିଲା, ସାବାସ୍ ।

ମଞ୍ଜୁମାଳା ଉମାର ଦୁଇ ହାତର କଅଁଳ ପାପୁଲି ଦୁଇଟିକୁ ମୁଠେଇ ଧରି କହିଲା, ଭଉଣୀ ତୁମେ ଆଜି ମୋର ଜନମ ଜନମର ପରଳ ପଡ଼ା ଅନ୍ଧ ଆଖିରୁ ପରଳ ଖୋଲି ଦେଇଛ । ଏ ସଂସାର, ଏ ଘରଜଗର ପ୍ରକୃତ ସ୍ୱରୂପ ଆଜି ମୋର ଆଖିରେ ପଡ଼ୁଛି । ମୁଁ ଆଉ ଭୁଲ୍ କରିବି ନାହିଁ । ମୁଁ ଆଉ ପାପ କରିବି ନାହିଁ । ତୁମେ କହ ମୁଁ କଣ କରିବି ? ଯୁଦ୍ଧକୁ ଯିବି ? ତମେ କବିତା ଦେବୀଙ୍କୁ ପଠାଇଲ, ସରଳା ଦେବୀଙ୍କୁ ପଠାଇଲ, ମୋତେ ପଠାଇବ ନାହିଁ ? ମୋତେ ସେହି ମହାଗୌରବର ଅଧିକାରିଣୀ କରାଇବ ନାହିଁ ?

ଏ ଦୃଶ୍ୟ ଦେଖି ଧନ ବାରିକର ପ୍ରାଣ ଉଚ୍ଛୁଳି ପଡ଼ିଲା । ସେ ମୁହଁରେ ଦୁଇ ହାତ ଚାପି ଧୋଡ଼େଇ ସୁଁ ସୁଁ କାନ୍ଦି କାନ୍ଦି ଅଗଣାକୁ ଚାଲିଗଲା । ଉମା ଆଖି ମିଟି ମିଟି କରି ଚାହିଁ ରହିଲା ମଞ୍ଜୁମାଳାର ମୁହଁକୁ । ସ୍ନେହ, ଆଶୀର୍ବାଦ, ଶୁଭେଚ୍ଛା ଓ ଆନନ୍ଦାଶ୍ରୁ ଏକାଠି ମିଶାମିଶି ହୋଇ ଟୋପା ଟୋପା ଝରି ପଡ଼ିଲା ।

ମଞ୍ଜୁମାଳା କାକୁତିଭରା ଥରିଲା କଣ୍ଠରେ କହିଲା, ଏ ଜନମର ଅଧେ ବୟସ କାଳ ଗର୍ଭରେ ହଜି ଗଲାଣି । ଆଉ କେତେ ଦିନ ଅବା ବଞ୍ଚିବା ? ସତ କହୁଛି ଉମା ଅପା, ତୁମର ପାଦଛୁଇଁ ପ୍ରମାଣ କରି କହୁଛି, ମୁଁ ଆଦୌ ଜାଣିପାରୁ ନାହିଁ ଜୀବନଟାକୁ କେମିତି ଭାବରେ କଟେଇବା ଭଲ ? କେତେବେଳେ କଣ କରିବା ଉଚିତ ?

ଅଜ୍ଞ, ଅକ୍ଷମ, ଅନ୍ଧ ଘେରକଲା ଭିକାରି ପରି ବିକଳ କଣ୍ଠରେ ପୁଣି ସେ କହିଲା, ମୋତେ କହ, ମୁଁ କଣ କରିବି ? ମୋ ଆଖି ଖୋଲି ଦେଇଛ । ଏବେ ବାଟ କଢ଼େଇ ନିଅ !

ଉମାର କଣ୍ଠ ବାଷ୍ପରୁଦ୍ଧ ହେଲା । ସେ ମନେ ମନେ ଭାବିଲା, ସତେତ ! ଭାରତର କୋଟି କୋଟି ତରୁଣୀ, କୋଟି କୋଟି ରମଣୀ ଯଦି ଆଜି ଭୁଲ୍ କରୁଛନ୍ତି, ଯାହା କରଣୀୟ କରୁ ନଥାନ୍ତି, ସେଥିପାଇଁ ଦାୟୀ ତାଙ୍କର ଅଶିକ୍ଷା, ଅଜ୍ଞତା, ଅକ୍ଷମତା—ତାଙ୍କର କଛି ଦୋଷ ନାହିଁ ? ତାଙ୍କୁ ବାଟକୁ ଆଣିବାର ଦାୟିତ୍ୱ ସେମାନଙ୍କର—ଯେଉଁମାନେ ସକଳ ବିଷୟର ମର୍ମ ଉଚିତ ଭାବରେ ଉପଲବ୍ଧି କରି ପାରନ୍ତି, ଚିର ...ଥା ଜାଣନ୍ତି, ବୁଝି ବୁଝାଇ ପାରିବାର ଶକ୍ତି ଲାଭ କରିଛନ୍ତି । ସେ ମଞ୍ଜୁମାଳାର ମଥା ଅଣ୍ଡାଳି ଅଣ୍ଡାଳି କହିଲା, ମଞ୍ଜୁ, ଆଉ ଡରନାହିଁ । ମୁଁ ସନ୍ତୁଷ୍ଟ ହୋଇଛି । ତୁମେ ଖାଲି ମୋ ହାତ ସାଙ୍ଗରେ ଅକପଟ ମନରେ ତୁମ ହାତଟାକୁ ମିଳାଇ ଦିଅ,

ମୋର ପଦଶବ୍ଦ ସାଙ୍ଗରେ ପଦଶବ୍ଦ ମିଳାଇ ଚାଲିବାକୁ ଚେଷ୍ଟାକର, ତେଣିକି ସବୁ ଠିକ୍ ହୋଇଯିବ ।

ଉଠ, ଚାଲ ! ଏ ସହରରେ, ଏ ଜିଲ୍ଲାରେ, ଏ ପ୍ରଦେଶରେ ଆଉ ସାରା ଭାରତ ବର୍ଷରେ ତମ ଭଳି ଯେତେ ଅନ୍ଧ, ଅକ୍ଷମ ଅନ୍ଧ ଯୁବକ, ଯୁବତୀ ଅଛନ୍ତି, ସମସ୍ତଙ୍କ ଆଖି ଖୋଲିଦେବା । ବାଟ କଢ଼େଇ ନେବା । ଉତ୍ସାହିତ କରାଇବା । ଜାଗ୍ରତ କରାଇ ଦେବା । ଆଜି ଏହି ଜାତୀୟ ବିପତ୍ତି ବେଳେ ମାତୃଭୂମି ପ୍ରତି ଏହାହିଁ ଆମର ପବିତ୍ର କର୍ତ୍ତବ୍ୟ । ଆମେ ଚାନ୍ଦା ମାଗିବା ନାହିଁ, ଆମେ ବକ୍ତୃତା ଦେବାନାହିଁ, ଆମେ ମାଗିବା ବିଜ୍ଞତା, ଆମେ ମାଗିବା ସୁବିଚାର, ଆମେ ମାଗିବା ଭାରତର ପ୍ରତିରକ୍ଷା ପାଇଁ, ମାନବିକତାର ବିଜୟ ପାଇଁ ସକଳ ନର ନାରୀଙ୍କ ଭିତରେ ସୁଦୃଢ଼ ଏକତା, ଶତ୍ରୁର ସାମ୍ନା କରିବାକୁ ସ୍ଥିର ଧୀରବ ମନ ବଳ, ଦେହ ବଳ, ବୁଦ୍ଧି ବଳ ଓ ଅଟଳ ପ୍ରତିଜ୍ଞା !

ଆନନ୍ଦରେ ଅଧୀରା ହୋଇ ଏକବାରେ ଚିତ୍କାର କଲା ଭଳି ମଞ୍ଜୁମାଳା କହିଲା, ହଁଉ !

ଉମା ଗାଢ଼ ଆଲିଙ୍ଗନ ପାଶରେ ମଞ୍ଜୁମାଳାକୁ ପୁଣି ଥରେ ଭିଡ଼ି ଧରି ତା କାନ ପାଖର କୁଞ୍ଚୁକୁଞ୍ଚିଆ ଲମ୍ବା ଲମ୍ବା ବାଳଗୁଡ଼ିକୁ ସ୍ନେହରେ ଓଟାରିବାକୁ ଲାଗିଲା ।

ଧନ ବାରିକ ଘରୁ ଅଗଣାକୁ ବାହାରି ଆସୁ ଆସୁ ପୁଣି ଭିତରକୁ ଫେରିଯାଇ କହିଲା, ପୁଲିସ୍ ଇନସ୍‌ପେକ୍ଟର ଆସି ଦାଣ୍ଡରେ ଠିଆ ହୋଇଛନ୍ତି । ମଞ୍ଜୁମାଳାକୁ ଡାକୁଛନ୍ତି ।

କାହିଁକି କେଜାଣି ମଞ୍ଜୁମାଳାର ମନ ଛନ୍ନ ଛନ୍ନ ହେଲା । ସେ ଅତି ସନ୍ତର୍ପଣରେ ଅଗଣାକୁ ଆସିଲା । ତାର ହାତ ଗୋଡ଼ ଥରି ଉଠିଲା ।

'କ୍ଷମା କରିବେ, କର୍ତ୍ତବ୍ୟ ଅନୁରୋଧରେ ଆପଣଙ୍କୁ ମୁଁ ଗିରଫ କରିବା ପାଇଁ ବାଧ୍ୟ ହେଉଛି ।'

ମଞ୍ଜୁମାଳା ଗିରଫ ହେଲା ।

ଉମା ବିସ୍ମିତ ହୋଇ ପଚାରିଲା, କାହିଁକି ?

'ପ୍ରତିରକ୍ଷା ପାଣ୍ଠି ଆତ୍ମସାତ ଅଭିଯୋଗ ହୋଇଛି ।'

ଉମା ଅକସ୍ମାତ ଏକ ଧକ୍‌କା ଖାଇଲା ପରି ହତାଶ ହୋଇ ସେଇଠି ବସି ପଡ଼ିଲା ।

ଆଜି ତରୁଣୀ ମନର ଯେତେ ଟାଣ ପଣ ଟଳି ପଡ଼ିଥିଲା ପରି ଲାଗୁଥିଲେ ବି ଉମା କ୍ରମେ କ୍ରମେ ନିଜକୁ ଆୟତ୍ତ କରିନେଲା । 'ଯେପରି କିଛି ଘଟିନାହିଁ, ଯେପରି କିଛି ହୋଇ ନାହିଁ, ଯାହା ହେବା ଉଚିତ, ସେତିକି ମାତ୍ର ହୋଇଛି'— ଏହି ଧାରଣାରେ ମନ ଦୃଢ଼ କରି ସେ ସଂଯତ ହେଲା ।

ଦିନ ଯାଇ ରାତି ଆସିଲା । ରାତି ଗମ୍ଭୀର ହେବାକୁ ବସିଲା । ସବୁ ଦିନ ପରି ଖିଆପିଆ ସରିଲା ପରେ ମାରବରେ ସେ ତା ଶୋଇବା ବଖରା ଭିତରେ ପଶି କବାଟ କିଳିଲା ।

ଖବରକାଗଜ ପଢ଼ିସାରି ଶୋଇବା ଆଗରୁ ଶେଜରେ ବସି ସେ ଅଭ୍ୟାସ ଅନୁସାରେ କିଛି ସମୟ ପାଇଁ ଧ୍ୟାନମଗ୍ନ ହେଲା ।

'ଭଗବାନ! କଣ ମୁଁ କରିବି କୁହ ।'

ମନେ ମନେ ସେ ଏଇ କଥା ଗୁଣି ଆଖି ବୁଜିଲା । ଟିକିଏ ପରେ ତାକୁ ତା ମନ ଓ ମସ୍ତିଷ୍କର ପରିଧିମାନ ଧୀରେ ଧୀରେ କେମିତି ଉନ୍ମୁକ୍ତ ହୋଇ ଯାଉଥିଲା ପରି ଲାଗିଲା । ଆପଣା ସ୍ୱୁଏଁ ତାର ଅନ୍ତର ତନ୍ତ୍ରୁ କିଏ ତାକୁ ଶୁଣେଇ ଶୁଣେଇ କହୁଥିଲା ପରି ଶୁଭିଲା— ତୋର ଜନ୍ମ ମରଣ ଉପରେ ଯେମିତିକି ତୋର କିଛି ହାତ ନାହିଁ, କର୍ମ ଉପରେ ମଧ୍ୟ କୌଣସି ଅଧିକାର ନାହିଁ । ଯେତେବେଳେ ଯାହା କରିବାକୁ ପଡୁଛି, ନିର୍ଲିପ୍ତ ଭାବେ କରି ଚାଲ୍ । ମନରୁ ଦୁର୍ବଳତାକୁ ହଟେଇ ଦେ । କାୟମନବାକ୍ୟରେ କେବେହେଲେ ବିଚଳିତ ହୁଅନା । ଆତ୍ମା, ହୃଦୟ ଓ ମନକୁ ସମଭାବରେ, ଉଦାର ଭାବରେ, ସରଳ ମାର୍ଗରେ ଊର୍ଦ୍ଧ୍ୱକୁ ଉନ୍ମୁକ୍ତ କରି ରଖିଥା ।

ପର ମୁହୂର୍ତ୍ତରେ ଉମା କିପରି ଏକ ଅଚିନ୍ତନୀୟ ବିପୁଳ ପୁଲକ ଅନୁଭବ କରିବାକୁ ଲାଗିଲା । ସେ ଶାନ୍ତିର ନିଶ୍ୱାସ ନେଇ ଗମ୍ଭୀର ନିଦରେ ଶୋଇ ପଡ଼ିଲା ।

ଅଧ ରାତି ଗଡ଼ି ଯାଇଥିଲା । ନିଦରେ ଶୋଇରହି ଉମା ଅନୁଭବ କଲା, କେମିତି ଗୋଟାଏ ମହ ମହ ଶୀତଳ ସୁଗନ୍ଧରେ ତାର ଦେହ, ମନ ପ୍ରଫୁଲ୍ଲ

ହୋଇ ଉଠୁଛି । ବଳେ ବଳେ ତାର ଆଖିପତା ଖୋଲି ହୋଇ ଯାଉଛି । ସତକୁ ସତ ସେମିତି ଶୋଇ ରହି ସେ ଦେଖି ପାରିଲା—

'ନୀଳ ଆକାଶର ଶାନ୍ତ ଗର୍ଭରୁ ଗୋଟିଏ ଦିବ୍ୟ ଜ୍ୟୋତିର ଉଜ୍ଜ୍ୱଳ ଧାରା ପୃଥିବୀ ପୃଷ୍ଠରେ ଝରି ପଡ଼ିଲା । ଗୃହୁଁ ଗୃହୁଁ ସୁବିସ୍ତୃତ ଏକ ଖାଲୁଆ ଭୂମି ସେହି ନିର୍ମଳ ଉଜ୍ଜ୍ୱଳ ଜଳ ଧାରାରେ ପରିପୂର୍ଣ୍ଣ ହେଲା ଓ ଦେଖୁ ଦେଖୁ ସେହି ଢଳ ଢଳ ଉଜ୍ଜ୍ୱଳ ନୀଳ ଜଳ-ଶଯ୍ୟା କୋଳରେ ଫୁଟି ଉଠିଲା ଅଗଣିତ ସୁନ୍ଦର ପଦ୍ମଫୁଲ । ମନୋରମ ପଦ୍ମବନର ଅପୂର୍ବ ଆଲୋକରେ ଦିଗ ବିଦିଗ ଉଦ୍‌ଭାସିତ ହେବାକୁ ଲାଗିଲା ।'

ଉମାର ନିଦ ଭାଙ୍ଗି ନଥିଲା । ତଥାପି କେମିତି ଗୋଟାଏ କଳ୍ପନାତୀତ ସ୍ୱର୍ଗୀୟ ଅନୁଭୂତିରେ ସେ ମୁଗ୍ଧ ହୋଇ ପଡୁଥିଲା । ଶରୀରର ପ୍ରତ୍ୟେକ ଲୋମମୂଳ ଟାଙ୍କୁରି ଉଠୁଥିଲା । ଅଦ୍ଭୁତ ଆନନ୍ଦର ଅପାର ସାଗରରେ ତାର ଶରୀର ବୁଡ଼ି ରହିଲା ।

ଅନେକ ସମୟ ବିତିଗଲା । ଧୀରେ ଧୀରେ ପଦ୍ମବନର ଏଠି ସେଠି ଗୋଟିଏ ଗୋଟିଏ ପ୍ରସ୍ଫୁଟିତ ପଦ୍ମଫୁଲର କେଶର ମଧ୍ୟରେ ମାରାତ୍ମକ ଜୀବାଣୁ ଦଳ ଗୋଟିଏ ଗୋଟିଏ ହୋଇ ପ୍ରବେଶ କଲେ । ସୁନ୍ଦର ପଦ୍ମଫୁଲ କେତୋଟି ଗୃହୁଁ ଗୃହୁଁ ବିକୃତ ହୋଇ ପଡ଼ିଲା ।

ଉମାର ମନରେ ଛନକା ପଶିଲା । ଅଜଣା ବେଦନାରେ ତାର ଅଚଞ୍ଚଳ ମନ ବ୍ୟଥିତ ହେବାକୁ ଲାଗିଲା ।

କ୍ରମେ କ୍ରମେ ବିକୃତ ପଦ୍ମଫୁଲଗୁଡ଼ିକ ଆପଣା ସଂଖ୍ୟା ବୃଦ୍ଧି କରି ସମଗ୍ର ପଦ୍ମବନର ଶୋଭା ନଷ୍ଟ କରିବାକୁ ଲାଗିଲେ । ଦୁଷ୍ଟ ଜୀବାଣୁଗୁଡ଼ିକ ହୃଷ୍ଟପୁଷ୍ଟ ହୋଇ ବିରାଟ ପଦ୍ମବନର ଏ ପାଖ ସେ ପାଖରେ ବ୍ୟାପକ ଭାବରେ ବିଭ୍ରାଟ ସୃଷ୍ଟି କଲେ ।

ଉମାର ଗ୍ରୁଡ ଥରି ଉଠିଲା । ସେ ପୁଣି ବିଚଳିତ ହୋଇ ପଡ଼ିଲା ।

ମୂକ ଭଳି ସେ କାନ୍ଥର ବଡ଼ ଦର୍ପଣ ଆଡ଼କୁ ଚାହିଁବାକୁ ଚେଷ୍ଟାକଲା । ନିଦୁଆ ଆଖି ଖୋଲିଲା ନାହିଁ । ତାର ମନେହେଲା, କିଏ ଯେମିତି କ ତାକୁ ନିଦରୁ ଉଠାଇ ଦେଇ ଘର ଭିତରୁ ଚାଲି ଯାଉ ଯାଉ କହିଗଲା— ଲୁ ଆଉ ଶୁଅନା । ଉଠ୍··· ଉଠ୍ ଚଞ୍ଚଳ । ଭଗବାନଙ୍କ ଦିବ୍ୟ ବିଭୂତି ନେଇ ଏହି ଧରିତ୍ରୀର ସୁନ୍ଦର

କୋଳରେ ସୃଷ୍ଟି ହୋଇଥିଲା ମଣିଷ ଜୀବନର ଯେଉଁ ବିପୁଳ ପଦ୍ମବନ, ତା ଭିତରେ ସର୍ବନାଶକାରୀ ରାକ୍ଷସ-ପ୍ରବୃତ୍ତିଗୁଡ଼ିକ କୀଟାଣୁ ରୂପରେ ପଶି ଯାଇଛନ୍ତି । ସେ ସୁନ୍ଦର ଜୀବନ-ସମୂହର ମଧୁମୟ ସମାବେଶକୁ କବଳିତ କରି ଦେଉଛନ୍ତି । ଆଉ ଶୋଇ ରହିବାର ବେଳ ନାହିଁ । ଉଠ୍…ଉଠ୍ ଶୀଘ୍ର । ବେଳ ଥାଉ ଥାଉ ସେହି ଚିର ସୁନ୍ଦର ପଦ୍ମବନର ପ୍ରତିରକ୍ଷା ପାଇଁ ଆୟୋଜନ କର୍ । ଉଠ୍……

‘ଉଠ’ ଚିତ୍କାର କରି ଉମା ଶେଜରୁ ଉଠି ପଡ଼ିଲା । ତାର ନିଦ ଭାଙ୍ଗି ଗଲା ।

ଜୟପୁର,
ତା: ୧୩.୪.୧୯୬୩

# ଆଧୁନିକ ଓଡ଼ିଆ ସାହିତ୍ୟକୁ ବିକାଶ ପ୍ରତିଷ୍ଠାନର କେତୋଟି ସାର୍ଥକ ଦାନ—

| | | |
|---|---|---|
| ଉପନ୍ୟାସ | (ପୁରସ୍କୃତ ପୁସ୍ତକ) ଅନ୍ତରାୟ | ଶ୍ରୀ କାହ୍ନୁଚରଣ ମହାନ୍ତି |
| | ସ୍ୱପ୍ନ ନା ସତ୍ୟ | ଶ୍ରୀ କାହ୍ନୁଚରଣ ମହାନ୍ତି |
| | ଦଇବ ଦଉଡ଼ି | ଶ୍ରୀ ରାମନାଥ ପଣ୍ଡା |
| | ଅଦୃଶ୍ୟ ଆଶୀର୍ବାଦ | ଶ୍ରୀ ରାମନାଥ ପଣ୍ଡା |
| | ପରାଗ | ଶ୍ରୀ ବାମାଚରଣ ମିତ୍ର |
| | ସ୍ଥିର ତରଙ୍ଗ | ଶ୍ରୀ ଦଶରଥ ସାମଲ |
| | ତନ୍ତ୍ରିକାର | ଶ୍ରୀ ଗୋପୀନାଥ ମହାନ୍ତି |
| | ତଥାସ୍ତୁ | ଶ୍ରୀ କାହ୍ନୁଚରଣ ମହାନ୍ତି |
| | ପଦ୍ମବନର ପ୍ରତିରକ୍ଷା | ଶ୍ରୀ ରାମନାଥ ପଣ୍ଡା |
| ଗଳ୍ପ ସଂଗ୍ରହ | ସ୍ୱପ୍ନସିଦ୍ଧି | ଶ୍ରୀ ବାମାଚରଣ ମିତ୍ର |
| | ଅସୀମ | ଶ୍ରୀ ବାମାଚରଣ ମିତ୍ର |
| | ପାଷାଣର ପ୍ରାଣ | ଶ୍ରୀ ବାମାଚରଣ ମିତ୍ର |
| | ଭଙ୍ଗା ଖେଳଣା | ଶ୍ରୀ ଯଶୋଦାଚରଣ ଦାସ |
| | ଅସ୍ତରାଗର କବି | ଶ୍ରୀ ମଙ୍ଗଳଚରଣ ବିଶ୍ୱାଳ |
| | ମହାପୁରୁଷ ବାଗ | ଶ୍ରୀ ବାମାଚରଣ ମିତ୍ର |
| | ରଣ ଧନ୍ଦୋଳ | ଶ୍ରୀ ଗୋପୀନାଥ ମହାନ୍ତି |
| | ବଡ଼ ମହାପୁରୁଷ | ଶ୍ରୀ ବାମାଚରଣ ମିତ୍ର |
| | ବିଚିତ୍ର ବିଭୂତି | ଶ୍ରୀ ରାମକୃଷ୍ଣ ଦାସ |
| | ସ୍ମୃତି | ଶ୍ରୀ କୃଷ୍ଣଚନ୍ଦ୍ର ଜେନା |
| କବିତା | ଭକ୍ତି-ଭାଗବତ | ଶ୍ରୀ ବ୍ରହ୍ମାନନ୍ଦ ଗୁପ୍ତ |
| | ଫେରିଆସ | ଶ୍ରୀ ନରସିଂହ ମିଶ୍ର |
| | ନୁହେଁ ଏ କଥା | ଶ୍ରୀ ଚିତ୍ତରଞ୍ଜନ ମହାନ୍ତି |

ସଂକ୍ଷିପ୍ତ ଦେବୀ ଭାଗବତ — ଶ୍ରୀ ହରିହର ନନ୍ଦ

ଅର୍ଘ୍ୟ — ତୁଳସୀ ଦାସ

ଦୁର୍ବାଦଳ — ପ୍ରିୟମ୍ବଦା ପାଣିଗ୍ରାହୀ

ନନ୍ଦାଦେବୀ — ଶ୍ରୀ ବିନୋଦଚନ୍ଦ୍ର ନାୟକ

ପାଷାଣୀର ପ୍ରଶ୍ନ — ଶ୍ରୀ କୃଷ୍ଣଚନ୍ଦ୍ର ଜେନା

**ନାଟକ**

ବ୍ରତଭଙ୍ଗ — ଶ୍ରୀ ରାମନାଥ ପଣ୍ଡା

କର୍ପୂର ମଞ୍ଜରୀ — ଶ୍ରୀ ବଶିଷ୍ଠାନନ୍ଦ ମହାନ୍ତି

ସଂଘର୍ଷ — ଶ୍ରୀ ପ୍ରଫୁଲ୍ଲ କୁମାର ରଥ

**ଶିକ୍ଷା**

ଶିକ୍ଷା ସିଦ୍ଧାନ୍ତ — ଶ୍ରୀ ଲୋକନାଥ ପଣ୍ଡା

**ସାହିତ୍ୟ**

ଓଡ଼ିଶା ଓ ଜୈନଧର୍ମ — ୰ ଲକ୍ଷ୍ମୀନାରାୟଣ ସାହୁ

ବେଦ ମନୁଷ୍ୟ କୃତ କି? — ଶ୍ରୀ ପ୍ରିୟବ୍ରତ ଦାସ

(ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ)

ଅମୃତ — ଶ୍ରୀ ବ୍ରଜବନ୍ଧୁ ମିଶ୍ର

ଶ୍ରୀମଦ୍ ଭଗବଦ୍ ଗୀତା — ୰ ନିରଞ୍ଜନ ବିଦ୍ୟାଧର

**ଚିକିତ୍ସା**

ଟୁଟୁକା ଚିକିତ୍ସା — ଶ୍ରୀ ମୃତ୍ୟୁଞ୍ଜୟ ମିଶ୍ର

ବାଳ ଚିକିତ୍ସାର୍ଣ୍ଣବ — ଶ୍ରୀ କାଶିନାଥ ମହାପାତ୍ର

ପାଠାଗାରମାନଙ୍କ ପାଇଁ କମିଶନ ସହ ପୁସ୍ତକ ପାଇବାକୁ ଯୋଗାଯୋଗ ସ୍ଥାପନ କରନ୍ତୁ—

ଫୋନ ନଂ: ୩୯

କଲ୍ୟାଣ ପ୍ରତିଷ୍ଠାନ

ଜୟପୁର ( କୋରାପୁଟ )